

(୧୯୨୨ - ୨୦୧୨)

# ଅଭୁଲା
# ଗୁଣନିଧି
## ଏକ ସ୍ମୃତିଲେଖ



କେଦାରନାଥ ଗବେଷଣା ପ୍ରତିଷ୍ଠାନ
କେଦାରଗୌରୀ ମାର୍ଗ, ଭୁବନେଶ୍ୱର-୭୫୧୦୦୨



## ଗୁଣନିଧି ମହାପାତ୍ର

(୧୮.୦୪.୧୯୨୨ - ୨୫.୦୪.୨୦୧୨)

# ଆସାମ ରାଜ୍ୟପାଳଙ୍କ ବାର୍ତ୍ତା

No. 2368 Dt. 25.5.2012

ରାଜଭବନ

ଗୁଆହାଟି



ଜାନକୀବଲ୍ଲଭ ପଟ୍ଟନାୟକ

## ଶୋକ ବାର୍ତ୍ତା

ଅତ୍ୟନ୍ତ ଦୁଃଖର ବିଷୟ ଭୁବନେଶ୍ୱରର ଜଣେ ବିଶିଷ୍ଟ ନାଗରିକ ଓ ସମାଜସେବୀ ଶ୍ରୀ ଗୁଣନିଧି ମହାପାତ୍ରଙ୍କର ପରଲୋକ ହୋଇଯାଇଛି । ଗୁଣନିଧି ବାବୁ କେଦାରନାଥ ଗବେଷଣା ପ୍ରତିଷ୍ଠାନର ପ୍ରତିଷ୍ଠାତା ଓ ଚେୟାରମ୍ୟାନ ଏବଂ ନିଉ କ୍ୟାପିଟାଲ ହେବା ପୂର୍ବରୁ ସେ ପୁରୁଣା ଭୁବନେଶ୍ୱରର ବିଭିନ୍ନ ସାମାଜିକ ଓ ସାଧାରଣସେବୀ ଅନୁଷ୍ଠାନ ସହିତ ସଂପୃକ୍ତ ଥିଲେ । ବି.ଡି.ଓ ଭାବରେ ଅବସର ନେବାପରେ ସେ ପ୍ରଥମେ ଭୁବନେଶ୍ୱର ଉପନଗରପାଳ ଓ ପ୍ରଥମ ନଗରପାଳ ଭାବରେ କୃତିତ୍ୱର ସହିତ ତାଙ୍କର ଦାୟିତ୍ୱ ତୁଲାଇଥିଲେ । ଲିଙ୍ଗରାଜ ମନ୍ଦିର ଟ୍ରଷ୍ଟ ବୋର୍ଡର ସଭାପତି ଥିଲେ । ବିଶିଷ୍ଟ ଐତିହାସିକ କେଦାର ମହାପାତ୍ରଙ୍କ କନିଷ୍ଠ ଭ୍ରାତା ଥିଲେ । ସେ ମଧ୍ୟ ଲେଖକ ଓ ଐତିହାସିକ ଗବେଷଣା ସହିତ ସଂପୃକ୍ତ ଥିଲେ ।

ତାଙ୍କ ଅମର ଆତ୍ମାର ସଦ୍‌ଗତି କାମନା କରିବା ସଙ୍ଗେ ସଙ୍ଗେ ଶୋକସନ୍ତପ୍ତ ପରିବାରବର୍ଗଙ୍କୁ ମୋର ସମବେଦନା ଜଣାଉଛି ।

ଜାନକୀବଲ୍ଲଭ ପଟ୍ଟନାୟକ

(ଜାନକୀବଲ୍ଲଭ ପଟ୍ଟନାୟକ)

## ଓଡ଼ିଶା ସଂସ୍କୃତ ଏକାଡେମୀ ପକ୍ଷରୁ ଶ୍ରଦ୍ଧାଞ୍ଜଳି ଜ୍ଞାପନ

ଭୁବନେଶ୍ୱର ମ୍ୟୁନିସିପାଲିଟିର ପ୍ରଥମ ନଗରପାଳ, କେଦାରନାଥ ଗବେଷଣା ପ୍ରତିଷ୍ଠାନର ପ୍ରତିଷ୍ଠାତା ସଭାପତି ଡାଲମିଆ ଧର୍ମଶାଳାର ପ୍ରାଣକେନ୍ଦ୍ର, ବ୍ରାହ୍ମଣ ମହାସଭାର ସଭାପତି, ବହୁ ସାଂସ୍କୃତିକ ପ୍ରତିଷ୍ଠାନର ପ୍ରେରଣାସ୍ରୋତ ଗୁଣନିଧି ମହାପାତ୍ରଙ୍କର ବିୟୋଗ ଏକ ଅପୂରଣୀୟ ଶୂନ୍ୟସ୍ଥାନ ସୃଷ୍ଟିକଲା । ମିତଭାଷୀ, ସମୟାନୁବର୍ତ୍ତୀ ତଥା ଗୁଣବେତ୍ତା ଗୁଣନିଧିବାବୁଙ୍କର ଅଭାବ ବହୁ ଦୁଃଖଦ । କାଇନେଟିକ୍ ହୋଣ୍ଡା ଚକାର ବାର୍ଦ୍ଧକ୍ୟକୁ ଭ୍ରୁକ୍ଷେପ କରୁନଥିଲେ ସେ ସତେ ଯେପରି ଯୌବନକୁ ୯୦ ବର୍ଷ ପର୍ଯ୍ୟନ୍ତ ବାନ୍ଧି ରଖିଥିଲେ । କେଦାରନାଥ ଗବେଷଣା ପ୍ରତିଷ୍ଠାନ ପ୍ରତି ତାଙ୍କର ଅବଦାନ ଅବିସ୍ମରଣୀୟ । ମ୍ୟୁନିସିପାଲିଟିର ଅଧକ୍ଷ ପଦରୁ ଉଠି ସେ ରାଜନୀତିରେ ବହୁ ପଦବୀ ମଣ୍ଡନ କରିପାରିଥାନ୍ତେ । କିନ୍ତୁ ଭାଇନାଙ୍କ ସ୍ମୃତି ଉଜ୍ଜୀବିତ ରଖିବା ପାଇଁ ପ୍ରବୀଣ ଓ ନବୀନ ଗବେଷକଙ୍କ ପାଇଁ ଯେଉଁ ଗବେଷଣା ମନ୍ଦିର ନିର୍ମାଣ କରିଛନ୍ତି, ସେଥିପାଇଁ ନିଶ୍ଚିତଭାବେ ସେ ଅବିସ୍ମରଣୀୟ ରହିବେ ।

ସବୁ ସଭାରେ ମୂଳରୁ ଶେଷ ପର୍ଯ୍ୟନ୍ତ ଉପସ୍ଥିତ ରହି ସଭ୍ୟମାନଙ୍କୁ ପ୍ରେରଣା ଦେଉଥିଲେ ବୈଜ୍ୟଘରେ ଜନ୍ମ ନେଇ ନିଜକୁ ସକ୍ରିୟ ରଖିବାକୁ ପ୍ରୟାସ କରୁଥିଲେ । ସଂସ୍କୃତି ଓ ରାଜନୀତି କ୍ଷେତ୍ରରେ ବହୁ ପ୍ରତିଷ୍ଠିତ ବ୍ୟକ୍ତି ଯେଉଁ ଭାବପ୍ରବଣତାରେ ତାଙ୍କର ଅମର ଆତ୍ମାପ୍ରତି ଶ୍ରଦ୍ଧାଞ୍ଜଳି ନିବେଦନ କଲେ, ସେଥିରୁ ତାଙ୍କର ଲୋକପ୍ରିୟତା ଜଣାଯାଏ । କାଳ କିନ୍ତୁ ତାର ଲୀଳା କରିଛି ଓ ତାଙ୍କୁ ଧୀରେ ଧୀରେ ଟାଣିବାର ସୂଚନା ଦେଇଛି । ଏହା ସତେ ଯେପରି ସେ ଜାଣି ପାରୁଥିଲେ ।

କେଦାରନାଥ ଗବେଷଣା ପ୍ରତିଷ୍ଠାନ, ବିନ୍ଦୁସାଗର, ଭୁବନେଶ୍ୱର ଓ ବହୁ ଅମୂଲ୍ୟ ପ୍ରକାଶନ ଏହି ଅଜାତଶତ୍ରୁ ପୁରୁଷଙ୍କୁ ଅମର ରଖିବ । ତାଙ୍କ ସ୍ମୃତିରେ ଅମର ଆତ୍ମାପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛୁ । ଏକାଡେମୀରେ ଶୋକସଭା କରାଯାଇ ଶ୍ରଦ୍ଧାଞ୍ଜଳି ଜ୍ଞାପନପୂର୍ବକ ଆତ୍ମାର ସଦ୍‌ଗତି କାମନା କରାଯାଇ ଶୋକସନ୍ତପ୍ତ ପରିବାର ପ୍ରତି ସମବେଦନା ଜ୍ଞାପନ କରାଯାଇଥିଲା ।

**ପଣ୍ଡିତ ହରେକୃଷ୍ଣ ଧୂପାଳ ଶର୍ମା**
**ଯୁଗ୍ମ ସଂପାଦକ**

**ପ୍ରଫେସର ଗୋପାଳକୃଷ୍ଣ ଦାଶ**
**ସଭାପତି**
**ତା.୨୭.୦୫.୨୦୧୨ରିଖ**



# ଗୁଣନିଧି ମହାପାତ୍ରଙ୍କ ବିୟୋଗରେ ଶୋକ

-ଡ: ଅମିୟ କୁମାର ପଟ୍ଟନାୟକ

ଶ୍ରୀଯୁକ୍ତ ଗୁଣନିଧି ମହାପାତ୍ରଙ୍କ ଦେହାନ୍ତ ସମ୍ବାଦ ଅତ୍ୟନ୍ତ ଦୁଃଖଦ । ହଠାତ୍ ବିଶ୍ୱାସ କରିହେଲାନାହିଁ । ପ୍ରଫେସର ରାଜକିଶୋର ମିଶ୍ରଙ୍କ ଭଳି ଜଣେ ନିର୍ଭରଯୋଗ୍ୟ ବ୍ୟକ୍ତିଙ୍କ ସୂତ୍ରରୁ ଶୁଣି ନଥିଲେ ହୁଏତ ଏହାକୁ ପ୍ରଥମେ ବିଶ୍ୱାସ କରିନଥାନ୍ତି । ଶ୍ରୀଯୁକ୍ତ ମହାପାତ୍ର ଅଳ୍ପଦିନ ପୂର୍ବରୁ ଖୁବ୍ ସୁସ୍ଥ ଥିଲେ । ବର୍ଦ୍ଧିତ ବୟସର ପ୍ରଭାବ ତାଙ୍କ ଉପରେ ଆଦୌ ପଡ଼ିନଥିଲା । ତାଙ୍କର କର୍ମଠ ଜୀବନଶୈଳୀ ତାଙ୍କୁ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସକ୍ଷମ ରଖିବାକୁ ସହାୟକ ହୋଇଥିଲା ।

ଶ୍ରୀଯୁକ୍ତ ମହାପାତ୍ର ଜଣେ ଅତ୍ୟନ୍ତ ଅମାୟିକ ଏବଂ ଦରଦୀ ବ୍ୟକ୍ତିତ୍ୱ । ସେ ଜଣେ ବ୍ୟକ୍ତି ନଥିଲେ, ଥିଲେ ଏକ ଅନୁଷ୍ଠାନ । ଜଣେ ବିଶିଷ୍ଟ ସମାଜସେବୀ ଓ ସଂସ୍କୃତି ପ୍ରେମୀ ବ୍ୟକ୍ତି ହିସାବରେ ସେ ବୁଦ୍ଧିଜୀବୀ ମହଲରେ ସୁପରିଚିତ ଥିଲେ । ଅନ୍ୟକୁ ସମ୍ମାନ ଦେବା ତାଙ୍କଠୁ ଶିକ୍ଷା କରିବା ଉଚିତ୍ । ଜଣେ ଦକ୍ଷ ରାଜନୀତିଜ୍ଞ ତଥା ସମାଜସେବୀ ହିସାବରେ ସେ ତାଙ୍କର ପଦଚିହ୍ନ ଛାଡ଼ିଯାଇଛନ୍ତି । ଭୁବନେଶ୍ୱର ଏନ୍.ଏ.ସି.ର ପ୍ରଥମ ଚେୟାରମ୍ୟାନ ଭାବରେ ସେ ମହାନଗରୀର ମୂଳଦୁଆ ସହିତ ଜଡ଼ିତ ଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ପ୍ରାପ୍ତବୟସରେ ଜଟିଳ ରାଜନୈତିକ ଜୀବନଠାରୁ ନିଜକୁ ଦୂରେଇ ରଖି ସେ ସାଂସ୍କୃତିକ ଏବଂ ସାମାଜିକ କାର୍ଯ୍ୟରେ ନିଜକୁ ସଫଳ ଭାବରେ ନିୟୋଜିତ କରୁଥିଲେ । ତାଙ୍କ ସଭାପତିତ୍ୱରେ ଗଢ଼ିଉଠିଥିବା କେଦାରନାଥ ଗବେଷଣା ପ୍ରତିଷ୍ଠାନ ଓଡ଼ିଶାର ଏକ ଉଚ୍ଚକୋଟିର ଏବଂ ସମ୍ମାନଜନକ ସାଂସ୍କୃତିକ ଅନୁଷ୍ଠାନ ଭାବରେ ଗଣାଯାଏ । ଏହା ସହିତ ସଂଶ୍ଳିଷ୍ଟ ହେବାକୁ ଓଡ଼ିଶାର ବହୁ ମାନ୍ୟଗଣ ବ୍ୟକ୍ତି ନିଜକୁ ଗୌରବାନ୍ୱିତ ମନେ କରନ୍ତି । ଜଣେ ଯୋଗଜନ୍ମା ଗବେଷକ ଶ୍ରୀଯୁକ୍ତ କେଦାରନାଥ ମହାପାତ୍ରଙ୍କ କନିଷ୍ଠ ଭ୍ରାତା ହିସାବରେ ସେ ନିଜ ଜ୍ୟେଷ୍ଠ ଭ୍ରାତାଙ୍କର ଅସମ୍ପୂର୍ଣ୍ଣ କାର୍ଯ୍ୟ ସମ୍ପୂର୍ଣ୍ଣ କରିବା ପାଇଁ ନିଜ ଜୀବନକୁ ନିୟୋଜିତ କରିଥିଲେ । ପୂଜ୍ୟପୂଜାରେ କେଦାରନାଥ ଗବେଷଣା ପ୍ରତିଷ୍ଠାନ ସର୍ବାଗ୍ରେ ।

ଶ୍ରୀଯୁକ୍ତ ମହାପାତ୍ରଙ୍କ ସହିତ ମୋର ବ୍ୟକ୍ତିଗତ ସମ୍ପର୍କ ଖୁବ୍ କମ ଦିନର; କିନ୍ତୁ ଅତ୍ୟନ୍ତ ଗଭୀର । କେଦାରନାଥ ଗବେଷଣା ପ୍ରତିଷ୍ଠାନର ବିଭିନ୍ନ କାର୍ଯ୍ୟକ୍ରମ ପାଇଁ କେତେଥର ଅତିଥିଭାବରେ ମୋତେ ନିମନ୍ତ୍ରଣ କରିଛନ୍ତି । ପ୍ରତ୍ୟେକ ଥର ନିମନ୍ତ୍ରଣ କରିବାକୁ ଏବଂ କାର୍ଡ଼ ଛପାଯିବାପରେ ନିମନ୍ତ୍ରଣ ପତ୍ର ଦେବାକୁ ବ୍ୟକ୍ତିଗତ ଭାବରେ ସେ ନିଜେ ଆସନ୍ତି । ବାରଣ କଲେ ମଧ କେବେହେଲେ ଆଉ କାହା ହାତରେ ପଠାଇବାକୁ ସୌଜନ୍ୟତାର ଅଭାବ ବୋଲି କହି ବିରୋଧ କରନ୍ତି । ତାଙ୍କର ଏଇ ସ୍ୱଭାବରେ ସ୍ୱତଃପ୍ରବୃତ୍ତ ଭାବେ ମୁଣ୍ଡ ନଇଁଯାଏ । ତାଙ୍କୁ ମନାକରିବାର ସାହସ ଅନ୍ତତଃ ମୋର କେବେହେଲେ ନଥିଲା । ଶ୍ରୀଯୁକ୍ତ ମହାପାତ୍ରଙ୍କ ବିୟୋଗରେ ଆମେ ଏକ ଦୃଷ୍ଟାନ୍ତ ସୃଷ୍ଟିକାରୀ ବ୍ୟକ୍ତିଙ୍କୁ ହରାଇଲୁ । ତାଙ୍କର ଅଭାବ ଅପୂରଣୀୟ । ବର୍ତ୍ତମାନ ସମାଜରେ ଏଭଳି ଅମାୟିକ, ନିଷ୍କପଟ ଏବଂ ଶୃଙ୍ଖଳିତ ବ୍ୟକ୍ତିତ୍ୱର ଅଭାବ ପରିଲକ୍ଷିତ ହେଉଛି ।

ମୁଁ ବ୍ୟକ୍ତିଗତ ଭାବରେ ଏବଂ ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟ ତରଫରୁ ତାଙ୍କର ଅମର ଆତ୍ମାର ସଦ୍‌ଗତି କାମନା କରିବା ସହିତ ଶୋକସନ୍ତପ୍ତ ପରିବାର ବର୍ଗଙ୍କୁ ସମବେଦନା ଜଣାଇ ଈଶ୍ୱରଙ୍କ ପାଖରେ ପ୍ରାର୍ଥନା କରୁଛି ଯେ ଈଶ୍ୱର ତାଙ୍କୁ ଏ ଦୁଃଖ ସହିବାକୁ ଶକ୍ତି ଦିଅନ୍ତୁ ।

କୁଳପତି

ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟ

# ଶୋକବାର୍ତ୍ତା

ଆମ ନାଗେଶ୍ୱର ମନ୍ଦିର ଉନ୍ନୟନ ସମିତିର ସ୍ଥାୟୀ ସଭାପତି ଗୁଣନିଧି ମହାପାତ୍ରଙ୍କର ତା୨୪.୦୫.୨୦୧୨ରିଖ ଗୁରୁବାର ଦିନ ଆକସ୍ମିକ ବିୟୋଗ ଯୋଗୁଁ ଆମ୍ଭେମାନେ ଅତ୍ୟନ୍ତ ଦୁଃଖିତ ଓ ମର୍ମାହତ । ତାଙ୍କ ପରି ଜଣେ ବିଶିଷ୍ଟ ରାଜନୀତିଜ୍ଞ, ବରିଷ୍ଠ ସମାଜସେବୀ, ମହାନ୍ ସଂସ୍କୃତିପ୍ରେମୀ, ଦକ୍ଷ ସଂଗଠନ ଓ ଆଦର୍ଶ ବ୍ୟକ୍ତିଙ୍କ ତିରୋଧାନ କେବଳ ଆମ ସମିତି ପାଇଁ ନୁହେଁ, ବରଂ ସମଗ୍ର ଓଡ଼ିଶା ପାଇଁ ଏକ ଅପୂରଣୀୟ କ୍ଷତି । ସେ ଆମ ଅନୁଷ୍ଠାନର ଥିଲେ ଉତ୍ସ ଓ ଉଲ୍ଲାସ । ତାଙ୍କର ସମିତି ପ୍ରତି ଗଭୀର ଆନ୍ତରିକତା ଓ ସକ୍ରିୟ ସହଯୋଗ ଆମପାଇଁ ଚିରସ୍ମରଣୀୟ ।

ଏପରି ଦାରୁଣ ଦୁଃଖରେ ଅତ୍ୟନ୍ତ ମର୍ମାହତ ତାଙ୍କର ଶୋକ ସନ୍ତପ୍ତ ପରିବାର ପ୍ରତି ଆମ ସମିତିର ସଭ୍ୟବୃନ୍ଦ ଗଭୀର ସମବେଦନା ଜଣାଇବା ସଂଗେ ସଂଗେ ତାଙ୍କ ମହାନ୍ ପବିତ୍ର ଆତ୍ମାର ସଦ୍‌ଗତି ପାଇଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଅଛୁ ଏବଂ ଏହି ଦୁର୍ଦ୍ଦିନର ସମ୍ମୁଖୀନ ହେବାପାଇଁ ପରମେଶ୍ୱର ତାଙ୍କ ପରିବାରକୁ ଅସୀମ ଧୈର୍ଯ୍ୟ ଓ ସାହସ ପ୍ରଦାନ କରନ୍ତୁ ।

**ସୁବାସ ଚନ୍ଦ୍ର ପଟ୍ଟନାୟକ**
**ସଂପାଦକ**

**ନିତ୍ୟାନନ୍ଦ ନାୟକ**
**ଉପସଭାପତି**
**ନାଗେଶ୍ୱର ମନ୍ଦିର ଉନ୍ନୟନ କମିଟି**

# ଶ୍ୱେତ ସଂକେତ ସାରସ୍ୱତ ମଞ୍ଚର ବାର୍ତ୍ତା

ଶ୍ୱେତ ସଂକେତ ସାରସ୍ୱତ ମଞ୍ଚର ଏକ ସ୍ୱତନ୍ତ୍ର ଆସର ଗତ ୨୭ ତାରିଖ ସଂଧ୍ୟାରେ ସ୍ଥାନୀୟ ରାଜଧାନୀ କଳା ସଂସଦଠାରେ ଅନୁଷ୍ଠିତ ହୋଇଥିଲା । ଡ. ଆଶା ମିଶ୍ରଙ୍କ ଅଧ୍ୟକ୍ଷତାରେ ଏହି ସଭାରେ ଶ୍ରୀଯୁକ୍ତ ଗୁଣନିଧି ମହାପାତ୍ରଙ୍କ ବିୟୋଗରେ ଶୋକବ୍ୟକ୍ତ କରାଯାଇ ତାଙ୍କ ମହାନ୍ ଆତ୍ମାର ସଦ୍‌ଗତି ପାଇଁ ପ୍ରାର୍ଥନା କରାଯାଇଥିଲା ! ଏହି ଅବସରରେ ତାଙ୍କ ଜୀବନର ବିଭିନ୍ନ ଦିଗ ଉପରେ ବକ୍ତାମାନେ ମତ ରଖି ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲେ ।

**ଦେବେନ୍ଦ୍ରନାଥ ଦାଶ**
ସଂପାଦକ
ଶ୍ୱେତ ସଂକେତ ସାରସ୍ୱତ ମଞ୍ଚ



# କେଦାରନାଥ ଗବେଷଣା ପ୍ରତିଷ୍ଠାନର ଶୋକବାର୍ତ୍ତା

ଆଜି ତା୨୭.୦୫.୨୦୧୨ ସନ୍ଧ୍ୟା ୬ଟା ୩୦ମିନିଟ୍‌ରେ ପ୍ରତିଷ୍ଠାନର ଉପସଭାପତି ଡ଼ଃ ଅରବିନ୍ଦ ପଟ୍ଟନାୟକଙ୍କ ଅଧକ୍ଷତାରେ ଏକ ଶୋକସଭା ପାଠାଗାର କକ୍ଷରେ ଅନୁଷ୍ଠିତ ହୋଇଥିଲା । ଏଥିରେ ୰ ଗୁଣନିଧି ମହାପାତ୍ରଙ୍କ ବିୟୋଗରେ ଶୋକ ପ୍ରକାଶ କରାଯାଇ ୨ମିନିଟ୍ ନୀରବ ପ୍ରାର୍ଥନା କରାଯାଇଥିଲା । ଶୋକ ପ୍ରସ୍ତାବ ଗୃହୀତ ହୋଇ ସଂପୃକ୍ତ ପରିବାରବର୍ଗଙ୍କୁ ଜଣାଇ ଦେବାପାଇଁ ସଂପାଦକଙ୍କୁ ଅନୁରୋଧ କରାଗଲା ।

୰ ଗୁଣନିଧି ମହାପାତ୍ର ଏକାଧାରରେ ଜଣେ ପରୋପକାରୀ, ନିରହଙ୍କାର, ସରଳ ଓ ସମାଜସେବୀ ବ୍ୟକ୍ତି ଥିଲେ । ସେ ପୁରୁଣା ଭୁବନେଶ୍ୱରର ବୈଦ୍ୟ ପରିବାରରେ ଜନ୍ମଲାଭ କରିଥିଲେ । ପ୍ରାଥମିକ ଶିକ୍ଷା ଓ ପରେ ପରେ ୧୯୪୯ରେ ହାଇସ୍କୁଲ ଶିକ୍ଷା ସମାପ୍ତ ପରେ ନିଜର କର୍ମମୟ ଜୀବନ ଆରମ୍ଭ କରି ବି.ଡ଼ି.ଓ ପଦବୀରେ ଅବସ୍ଥାପିତ ହେବାପରେ ସେ ସ୍ୱେଚ୍ଛାକୃତ ଭାବେ ଋକିରିରୁ ଅବସର ନେଇଥିଲେ । ପରେ ପରେ ସେ ଭୁବନେଶ୍ୱରର ପ୍ରଥମ ନଗରପାଳ ଭାବେ ନିର୍ବାଚିତ ହୋଇଥିଲେ । ଏହାପରେ ସେ ନିଜକୁ ସମାଜସେବାରେ ନିୟୋଜିତ କରିଥିଲେ । ପୁରୁଣା ଭୁବନେଶ୍ୱରର କେଦାରେଶ୍ୱର ମନ୍ଦିର, ଦ୍ୱାରବାସିନୀ ମନ୍ଦିର, ଦକ୍ଷିଣଚଣ୍ଡୀ ମନ୍ଦିର, ଉତ୍ତରେଶ୍ୱର ମନ୍ଦିରର ଜୀର୍ଣ୍ଣ ସଂସ୍କାର, ଗୌରୀକୁଣ୍ଡ, କେଦାରକୁଣ୍ଡ, ଶ୍ୟାମକୁଣ୍ଡର ପଙ୍କୋଧାର ଓ ପଥର ପାଚେରୀ ମରାମତି କରାଇଥିଲେ । ଏତଦ୍‌ବ୍ୟତୀତ ପୁରୁଣା ଭୁବନେଶ୍ୱରର ବହୁ ଅନୁଷ୍ଠାନ ସହିତ ଜଡ଼ିତ ଥିଲେ; ଯଥା: ନାଗେଶ୍ୱର ମନ୍ଦିର ଉନ୍ନୟନ କମିଟି, ରାମେଶ୍ୱର ବିଶ୍ୱଶାନ୍ତି ମହାଯଜ୍ଞ କମିଟି, କେଦାରନାଥ ଗବେଷଣା ପ୍ରତିଷ୍ଠାନ , ଡ଼ଃ ମହତାବ ଜୟନ୍ତୀ କମିଟି, ଭାରତୀୟ କଳା ସଂସ୍କୃତି ସଂରକ୍ଷଣ ସଂସ୍ଥା, ପୌର ଚିକିତ୍ସାଳୟ ରକ୍ତ ଭଣ୍ଡାର, ସତ୍ୟପ୍ରିୟ ମହାନ୍ତି ଜୟନ୍ତୀ କମିଟି, ଶୀତଳଷଷ୍ଠୀ କମିଟି, ଓଡ଼ିଶା ବ୍ରାହ୍ମଣ ମହାସଭା ସଭାପତି ପଦ । କୌଣସି ବ୍ୟକ୍ତି ଅସୁବିଧାର ସମ୍ମୁଖୀନ ହେଲେ ନିଜେ ଯାଇ ତାଙ୍କ ନିକଟରେ ଉପସ୍ଥିତ ହେଉଥିଲେ । ଜୀବନର ଶେଷ ସମୟ ପର୍ଯ୍ୟନ୍ତ ସେ ଚଳଚଞ୍ଚଳ ତଥା ସକ୍ରିୟ ଥିଲେ । ତାଙ୍କ ରଚିତ ପୁସ୍ତକ 'ମୋ' କଥା ମୋ ବ୍ୟଥା' ପାଇଁ ସେ ବିଶେଷ ଲୋକପ୍ରିୟତା ହାସଲ କରିପାରିଥିଲେ ।

୰ ମହାପାତ୍ରଙ୍କ ବିୟୋଗରେ ପ୍ରତିଷ୍ଠାନ ଜଣେ ମୁରବୀଙ୍କୁ ହରାଇଲା । ତାଙ୍କ ଆତ୍ମାର ସଦ୍‌ଗତି ନିମନ୍ତେ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଛୁ । ଏତଦ୍‌ବ୍ୟତୀତ ତାଙ୍କ ଶୋକସନ୍ତପ୍ତ ପରିବାରବର୍ଗଙ୍କ ପ୍ରତି ଗଭୀର ସମବେଦନା ଜ୍ଞାପନ କରୁଛୁ ।

ଭାଗୀରଥି ମହାପାତ୍ର(ସଂପାଦକ)

# ଅଖିଳ ଓଡ଼ିଶା ବ୍ରାହ୍ମଣ ମହାସଭା
## ଶୋକବାର୍ତ୍ତା

ଗୁଣୀଗଣ ଅଗ୍ରଗଣ୍ୟ ପରମ କାରୁଣିକ୍ୟ ସତ୍ୟ ସମାଜସେବୀ କୁଳବୃଦ୍ଧ ବୌୟଜ୍ୟେଷ୍ଠ ରାଜ୍ୟକାର୍ଯ୍ୟକାରୀ ସଭାପତି ଗୁଣନିଧି ମହାପାତ୍ରଙ୍କ ମହାପ୍ରୟାଣରେ ଅଖିଳ ଓଡ଼ିଶା ବ୍ରାହ୍ମଣ ମହାସଭାର ସମସ୍ତ କର୍ମକର୍ତ୍ତା, ଜିଲ୍ଲା ମହାସଭା ଓ ସର୍ବଭାରତୀୟ ବ୍ରାହ୍ମଣ ମହାସଂଘ କର୍ମକର୍ତ୍ତାମାନେ ଶୋକାବିଭୁତ ହେବା ସଙ୍ଗେସଙ୍ଗେ ସ୍ୱର୍ଗୀୟ ଆତ୍ମାର ସଦ୍‌ଗତି କାମନା କରିଥିଲେ । ରାଜ୍ୟ ପ୍ରତିନିଧିମାନେ ଶବାଧାର ଉପରେ ଅନ୍ତିମ ଶ୍ରଦ୍ଧାଞ୍ଜଳି ଅପ୍ରଣ କରିଥିଲେ । ଦଶାହ ଦିନ ବିନ୍ଦୁସାଗରରେ ଓ ଏକାଦଶାହରେ ପୁରୀ ମହୋଦଧିରେ ତିଳତର୍ପଣ କରାଗଲା ।

ହେ ମହାନ୍ ଆତ୍ମା, ଆପଣଙ୍କ ଅକୃତ୍ରିମ ସ୍ନେହ, ଶ୍ରଦ୍ଧା ଓ ପ୍ରେମ ଆମ ପାଇଁ ଚିର ଅମ୍ଳାନ ଓ ଅଭୁଲା ହୋଇରହିଗଲା । ଆପଣଙ୍କ ଜୀବନଦର୍ଶନ ଓ ନାମର ସାର୍ଥକତା ସବୁଦିନ ପାଇଁ ଅବିସ୍ମରଣୀୟ ହୋଇ ରହିଗଲା ।

ବୈକୁଣ୍ଠ ନାଥ ମିଶ୍ର, ମହାସଚିବ, ଅଖିଳ ଓଡ଼ିଶା ବ୍ରାହ୍ମଣ ମହାସଭା
ଶ୍ରୀ ନିଳମଣୀ ମିଶ୍ର, ସଭାପତି ବଲାଙ୍ଗୀର ଜିଲ୍ଲା
ଶ୍ରୀ ଜୟକୃଷ୍ଣ ଦାଶ ଶର୍ମା, ରାଜ୍ୟ ସଭାପତି
ଶ୍ରୀ ସୁଦର୍ଶନ ରଥ, ଜିଲ୍ଲା ସଂପାଦକ, ନୟାଗଡ
ଶ୍ରୀ ଭାଗିରଥି ହୋତା, ଜିଲ୍ଲା କର୍ଯ୍ୟକାରୀ ସଭାପତି
ପଣ୍ଡିତ ଧନେଶ୍ୱର ଆଚାର୍ଯ୍ୟ, ପୂର୍ବତନ ରାଜ୍ୟ ସଭାପତି
ଶ୍ରୀ ନିରଞ୍ଜନ ମିଶ୍ର, ଜିଲ୍ଲା ଯୁଗ୍ମ ସଚିବ
ଶ୍ରୀ ବୈଦ୍ୟନାଥ ମିଶ୍ର, ଜିଲ୍ଲା କୁଳପତି, କୋରାପୁଟ
ଶ୍ରୀ ଗୋପୀନାଥ ପାଣିଗ୍ରାହୀ, କର୍ଯ୍ୟକାରୀ ସଭାପତି
ଶ୍ରୀ ପ୍ରମଥନାଥ ମିଶ୍ର, ଜିଲ୍ଲା ଓ ମଣ୍ଡଳ ସଂପାଦକ
ଶ୍ରୀ ବିନାୟକ ସତପଥି, ସଭାପତି ମଲକାନଗିରି
ପଣ୍ଡିତ ରଘୁନାଥ ମହାପାତ୍ର, ଜିଲ୍ଲା ସଭାପତି, ପୁରୀ
ଶ୍ରୀ ଦିଗମ୍ବର ମିଶ୍ର, ସଂପାଦକ
ଶ୍ରୀ ମହେଶ ଚନ୍ଦ୍ର ରଥ, ଜିଲ୍ଲା ସଂପାଦକ, ମିଳିତ କିୟାନୁଷ୍ଠାନ ବ୍ରାହ୍ମଣ ସମିତି
ଶ୍ରୀ ସୂର୍ଯ୍ୟମଣି ଆଚାର୍ଯ୍ୟ
ଶ୍ରୀ ପୂର୍ଣ୍ଣଚନ୍ଦ୍ର ମିଶ୍ର, ଜିଲ୍ଲା ସଂପାଦକ, ଦେବଗଡ଼
ଶ୍ରୀ ପିତବାସ ମିଶ୍ର, ମଣ୍ଡଳ ସଭାପତି, ସମ୍ବଲପୁର
ଶ୍ରୀ ସୁଦର୍ଶନ ମହାପାତ୍ର, ଜିଲ୍ଲା ସଂପାଦକ ସୁନ୍ଦରଗଡ଼
ଶ୍ରୀମତୀ ଶ୍ରଦ୍ଧା ଦେବୀ, ରାଜ୍ୟ ସଂପାଦିକା
ଶ୍ରୀ ବ୍ରଜବନ୍ଧୁ ଷଡ଼ଙ୍ଗୀ. ଜିଲ୍ଲା ସଭାପତି ଖୋର୍ଦ୍ଧା
ଶ୍ରୀ ଶିବପ୍ରସାଦ ଦାଶ, ଜିଲ୍ଲା ସଭାପତି ଗଞ୍ଜାମ
ଶ୍ରୀ ସୁକାନ୍ତ କୁମାର ମିଶ୍ର, ଜିଲ୍ଲା ସଭାପତି ଢେଙ୍କାନାଳ
ଶ୍ରୀ ତ୍ରିନାଥ ନନ୍ଦ, ଜିଲ୍ଲା ସଭାପତି କଳାହାଣ୍ଡି



(BBSR) 432571, 430023
(CTC) 621074

# PRABIR PATTNAIK

(ADVOCATE)
Ex "Addl. Public Prosecutor"
(Special Judge Vigilance-cum-Addl. District & Sessions Judge Court, Bhubaneswar.)

Ref. Date 3/5/2012.

**A HUMBLE SOCIAL WORKER**

With the sad demise of Gunanidhi MohaPatra (Mausa ) we have lost true embodiment of traditional odia arestocracy blended with an outstanding record of social work and a Philanthropist Parexcellence and Gunanidhi MohaPatra was the walkie talkie catlague of Bhubaneswar City.

Hard to believe that we will never again see his gorgeous yet ever reassuring smile.

Guna mausa's death Provokes my shattered heart to say "God sometimes acts as the greatest sadist" myself, and our family and Guna mausa's family are closely associated since long, his son Rabi is my childhood Bosom friend.

I joined the bereavement for the un-expected loss to me as well as the family of Guna mausa and Pray Lord Lingaraj late his saul rest in Peace.

Pattnaik

Prabir Pattnaik
Advocate
S/o Late DurgaPrasanna Pattnaik
Plot no.346,Lewis Road,
Bhubaneswar,Dist-Khurda.

AT PLOT NO -346, Lewis Road, Near BJB College
Bhubaneswar-14.

## ନବତି ବର୍ଷରେ ଉପନୀତ ବର୍ଷୀୟାନ୍ ସାରସ୍ୱତ ସଂଗଠକ
## ଶ୍ରୀଯୁକ୍ତ ଗୁଣନିଧି ମହାପାତ୍ରଙ୍କୁ

# ଶୁଭ ଅଭିନନ୍ଦନିକା

ତା. ୧୮ .୦୫.୨୦୧୧

ରଚନା : ଡ଼କ୍ଟର ଲାବଣ୍ୟଚନ୍ଦ୍ର ସାହୁ

**ରାଗ : ରସକୁଲ୍ୟା : ବୃତ୍ତ : ବିଭୂଷଣ ପୁଷ୍ପେ ଯା'କାନ୍ତି ଜାଣ (ଉପେନ୍ଦ୍ରଭଞ୍ଜ)**

● ● ●

ସଦା ସ୍ଥିରମତି ଉଦାର ଧୀର
ଗୁଣନିଧି ! ତୁମ ଗୁଣ ଅପାର
ପ୍ରଶାନ୍ତ ବଦନ, ଭାବ ଗମ୍ଭୀର
ଚିର ନିରଳସ, କର୍ମେ ତତ୍ପର
ଆଜି ଶୁଭ ଲଗନରେ ଯେ,
ନବତି ବରଷେ, ହେଲ ଉପନୀତ ତୁମ୍ଭଙ୍କୁ ଅଭିନନ୍ଦନ ଯେ ।୧।

ନାହିଁ ତୁମ୍ଭଠାରେ ଭେଦବିଚାର
ମାନ-ଅଭିମାନ, ଇର୍ଷା କାତର
ଥିଲ ଦିନେ ବୋଲି, ନଗରପାଳ
ମନରେ ତୁମର ନାହିଁ ତ ଛଳ
ଆହେ ପୂଜ୍ୟ ବର୍ଷୀୟାନ ହେ !
ତୁମ କର୍ମନିଷ୍ଠା,ଉତ୍ସାହ,ପ୍ରେରଣା,ଆମ୍ଭ ପାଇଁ ବରଦାନ ଯେ ।୨।

ସାହିତ୍ୟ-ସଂସ୍କୃତି- ସମାଜସେବା
ସବୁ କ୍ଷେତ୍ରେ ତୁମେ ହୋଇଣ ଉଭା
ଭାବ ବନ୍ଧନରେ ବାନ୍ଧି ସରବେ
ମଥା ଟେକି ଚାଲ କି ଗଉରବେ
ନାହିଁ ତୁମ୍ଭ ପଟ୍ଟାନ୍ତର ଯେ,
କେଦାରନାଥଙ୍କ କୀର୍ତ୍ତିକେଦାରରେ ତୁମେ ଯୋଗ୍ୟ ମାଳାକାର ଯେ ।୩।

ନିରାମୟ ତୁମ୍ଭ ଜୀବନ ହେଉ
ଆମ୍ଭ ପ୍ରତି ସଦା କରୁଣା ଥାଉ
ତୁମ୍ଭ ପରାମର୍ଶ ପ୍ରେରଣା ଆଉ
ଶ୍ରଦ୍ଧା ସ୍ନେହାଦର ଅତୁଟ ରହୁ
ମାଗୁଛୁ ମାଗୁଣି ଆମ୍ଭେ ଯେ
ପ୍ରଭୁ କୀର୍ତ୍ତିବାସ ଆଶୀଷରେ ହୁଅ 'ଶତାୟୁପୁରୁଷ' ତୁମ୍ଭେ ଯେ ।୪।

*"ଆମ ଓଡ଼ିଶା" ପ୍ରଦତ୍ତ ସମ୍ବର୍ଦ୍ଧନା ସଭାରେ କବିଙ୍କ ଦ୍ୱାରା ପଠିତ*

# ଏକାମ୍ରରନ୍ନ ଗୁଣନିଧି ସ୍ମରଣେ

-ଶ୍ରୀ ରମେଶ ଚନ୍ଦ୍ର ପରିଡ଼ା

ଏକାମ୍ର ରତନ ଆଜି ହଜିଲା ଯେଉଁଠି
ଯେତେ ଖୋଜିଲେ ସେ ରନ୍ ପାଇବା କେଉଁଠି ?
ସ୍ମୃତି ତାଙ୍କ ଗୋଟି ଗୋଟି ପଡୁଥିବ ମନେ
ଯେତେଦିନ ବଞ୍ଚି ରହିଥିବା ଆମ୍ଭେମାନେ ।
ବିପଦେ ଆପଦେ କିଏ ଛିଡ଼ାହେବେ ଦ୍ୱାରେ
ଆଶ୍ୱାସନା ଶୁଣାଇବେ କିଏ ସେ ମଧୁରେ ।
ସମାଜର ସେବା କଲେ ଛାତ୍ର ଜୀବନରୁ
ଶେଷଯାଏ ଭୁଲିଲେନି ସେକଥା ମନରୁ ।
ନଗରପାଳ ଭାବରେ ନିର୍ବାଚିତ ହେଲେ
ଲୋକହିତ କାର୍ଯ୍ୟମାନ କେତେ କରିଗଲେ ।
ଛୁଇଁ ନପାରିଲା ତାଙ୍କୁ ଦୁର୍ନୀତି ରାକ୍ଷସ
ନିଷ୍କଳଙ୍କ ଭାବେ କାର୍ଯ୍ୟକାଳ କଲେ ଶେଷ ।
ଗବେଷଣା ପ୍ରତିଷ୍ଠାନ ପାଠାଗାର ପାଇଁ
ତା' ଉନ୍ନତି ଚିନ୍ତା କରୁଥାନ୍ତି ସଦା ରହି ।
ନଶ୍ୱର ଶରୀର ତାଙ୍କ ହେଲା ସିନା ଲୀନ
ଅମର କୀରତି ରହିଥିବ ଚିରଦିନ ।

ଯମେଶ୍ୱର ପାଟଣା ସାହି
ଭୁବନେଶ୍ୱର - ୨

# ଶୁନ୍‌ଶାନ୍ ଆଜି ସବୁଆଡ଼େ

-ତନୟା ଦାସ ଗୋସ୍ୱାମୀ

ଆଜି ଶୁନ୍‌ଶାନ୍ ସବୁଆଡ଼େ
ପାଠାଗାର ଆଉ ଧର୍ମଶାଳାରେ ଚଉକି କାନ୍ଦୁଛି
ବିନ୍ଦୁସାଗରକୁ ଅନେଇ କହୁଛି
ଗୁଣନିଧି ଆମ ଗଲେ କୁଆଡ଼ ?
ଆଜି ଶୁନ୍‌ଶାନ୍ ସବୁଆଡ଼େ ( ୧ )
ଆଜି ଶୁନ୍‌ଶାନ୍ ସବୁଆଡ଼େ
ଘର ଚଉକିଟି ସକାଳରୁ ସଂଜ ବେଶି କାନ୍ଦୁଅଛି
ପୋଷାକ ପତର ପଡ଼ିରହିଅଛି
ମାଉସୀ ଝୁରନ୍ତି ଗଲେ କୁଆଡ଼େ
ଆଜି ଶୁନ୍‌ଶାନ୍ ସବୁଆଡ଼େ ( ୨ )
ଆଜି ଶୁନ୍‌ଶାନ୍ ସବୁଆଡ଼େ
ଏ.ସି. ଗାଡ଼ି ଆଜି ରଥଦାଣ୍ଡରେ କେତେ ବାହୁନିଛି
"ଗୁଣନିଧି କକ୍ଷ" ଭାରି ଖୋଜୁଅଛି
ସମସ୍ତେ କହନ୍ତି ଗଲେ କୁଆଡ଼େ
ଆଜି ଶୁନ୍‌ମାନ୍ ସବୁଆଡ଼େ (୩)

ସଂପାଦିକା- ରାଜଧାନୀ ଶିଶୁ ସାହିତ୍ୟ ସଂସଦ
ଆଜୀବନ ସଭ୍ୟ, କେଦାରନାଥ ଗବେଷଣା ପ୍ରତିଷ୍ଠାନ



ରାଜ୍ୟପାଳ ଶ୍ରୀଯୁକ୍ତ ବିଶ୍ୱମ୍ଭର ନାଥ ପାଣ୍ଡେଙ୍କ ସହ ଲିଙ୍ଗରାଜ ମନ୍ଦିରରେ



ଏକ ଐତିହାସିକ ମୂହୁର୍ତ୍ତ:-ଦୀର୍ଘ ବର୍ଷର ବିରତି ପରେ ଶ୍ରୀ କପିଳନାଥ ମନ୍ଦିରରେ
ଗୁଣନିଧି ବାବୁଙ୍କ ଉଦ୍ୟମରେ ଆରମ୍ଭ ହୋଇଥିବା ରୋଷସେବା ଅବସରରେ



ଶ୍ରୀଯୁକ୍ତ ସତ୍ୟପ୍ରିୟ ମହାନ୍ତିଙ୍କ ସହିତ ସଭାରେ



ଶ୍ରୀଯୁକ୍ତ ବସନ୍ତ ବିଶ୍ୱାଳଙ୍କ ଗହଣରେ



# ପୌର ଚିକିତ୍ସାଳୟ ନୂତନ ଗୃହରେ






## ମହତାବ ଉଚ୍ଚ ବାଳିକା ବିଦ୍ୟାଳୟ ଉଦ୍‌ଘାଟନ ଅବସରରେ





ବରମୁଣ୍ଡା ବନଦୁର୍ଗା କ୍ଲବ ଉତ୍ସବରେ ନଗରପାଳ



ଭୁବନେଶ୍ୱର ନଗରପାଳିକା ବଜାର ଭିତ୍ତି ପ୍ରସ୍ତର ସ୍ଥାପନ ଅବସରରେ



N.A.C କର୍ମଚାରୀଙ୍କ ସହ ନଗରପାଳ



ଅଗ୍ରଜ କେଦାରନାଥଙ୍କ ଶବାଧାର ସହ



ନିତ୍ୟ କର୍ମଭୂମି : ଡ଼ାଲମିୟା ଧର୍ମଶାଳା

# ବିରଳ ସେ ବ୍ୟକ୍ତି -
# ଦୁର୍ଲଭ ସେ ବ୍ୟକ୍ତିତ୍ୱ !

-ଡକ୍ଟର ଅରବିନ୍ଦ ପଟ୍ଟନାୟକ

ବଂଧୁ ଭାଗୀରଥି ମହାସୁଆର ଦଣ୍ଡେ ଗୋଟିଏ ଚଉକୀକୁ ଚାହିଁଲେ, ଦଣ୍ଡେ ଗୁଣନିଧି ବାବୁଙ୍କ ଫଟୋକୁ ଅନାଇଲେ । ବଡ଼ ଭାବାବେଗରେ କହିଲେ - 'ଚଉକୀରେ ବସୁଥିବା ଲୋକଟା ତ ଫଟୋକୁ ଚାଲିଗଲା, ଆଉ କହିବି କ'ଣ ? କ୍ଷଣେ ଅଟକି ଗଲେ । ଅଟକି ଗଲା ବି ଆଖିରେ ଅଶ୍ରୁ । ନିଜକୁ ସମ୍ଭାଳି ନେଇ କ୍ରମେ ସ୍ମୃତି ଚାରଣ କଲେ । କେତେ ମାସ ତଳେ କେଦାରନାଥ ଗବେଷଣା ପ୍ରତିଷ୍ଠାନର ମୁଖପତ୍ର 'ଉତ୍କଳୀୟ ସଂସ୍କୃତି'ର କେଦାରନାଥ ଜନ୍ମ ଶତବାର୍ଷିକୀ ବିଶେଷାଙ୍କରେ ଗୁଣବାବୁଙ୍କର ଗୋଟିଏ ପୂର୍ଣ୍ଣ ଅବୟବ ଆଲୋକଚିତ୍ର ଛପା ହୋଇଛି । ସେଥିରେ ସେ ହସି ହସି ଆଗକୁ ମାଡ଼ିଯିବାକୁ ବାହାରିଥିବା ଭଳି ଦେଖାଯାଉଛନ୍ତି । ତା ତଳେ ମୁଦ୍ରିତ ହୋଇଛି - "ପ୍ରତିଷ୍ଠାନର ପ୍ରାଣ ଓ ପ୍ରେରଣା - ସଭାପତି ଶ୍ରୀ ଗୁଣନିଧି ମହାପାତ୍ର (ସ୍ୱର୍ଗତ କେଦାରନାଥଙ୍କ ଅନୁଜ)" । ସେତେବେଳେ ଗୁଣବାବୁ ଥିଲେ । ବସୁଥିଲା ତାଙ୍କ ନାମ ଆରମ୍ଭରେ 'ଶ୍ରୀ" । ଏବେ ସେ ଅବର୍ତ୍ତମାନ, ସ୍ୱର୍ଗତ, ଦିବଂଗତ । ତାଙ୍କର କର୍ମ ଆଖ ପାଖରେ କୀର୍ତ୍ତି ହୋଇ ରହିଯାଇଛି - କେଦାରନାଥ ଗବେଷଣା ପ୍ରତିଷ୍ଠାନ ରୂପରେ । କର୍ମର ଫଳ ଯାଇଛି ତାଙ୍କର ଆତ୍ମ ସହିତ ପରଜନ୍ମକୁ । ତାଙ୍କର ପ୍ରାଣ, ପ୍ରେରଣା ହୋଇ ଜାଜ୍ୱଲ୍ୟମାନ ତାଙ୍କର ଆଲୋକଚିତ୍ରରେ । ତାହା ଜଡ଼ବସ୍ତୁ ନୁହେଁ, ଗୁଣବାବୁଙ୍କ 'ପ୍ରାଣ ଓ ପ୍ରେରଣା'ର ପ୍ରତୀକ । କେଦାରନାଥ ଗବେଷଣା ପ୍ରତିଷ୍ଠା ପାଇଁ ଉତ୍ସାହର ଉତ୍ସ ।

ଆନନ୍ଦ ବୁଦ୍ଧଦେବଙ୍କୁ ପଚାରିଥିଲେ - "ଆପଣଙ୍କ ମହାପରିନିର୍ବାଣ ପରେ ଆମେ କ'ଣ କରିବୁ ?" ବୁଦ୍ଧ ଉତ୍ତର ଦେଇଥିଲେ - "ତୁମେ ଆଲୋକବର୍ତ୍ତିକାଟିଏ ଧରି ଅନ୍ଧାରରେ ବାଟ ଚାଲୁଛ । ସେହି ବର୍ତ୍ତିକାଟି ଯଦି ବାଟ ମଝିରେ ଲିଭିଯାଏ, କ'ଣ କରିବ ? ଆଗକୁ ଯିବ ନା ଯେଉଁଠାରୁ ଯାତ୍ରା ଆରମ୍ଭ କରିଥିଲ ସେଠାକୁ ଫେରି ଆସିବ ?" ଆନନ୍ଦ ବୁଝିଗଲେ । ରବୀନ୍ଦ୍ରନାଥଙ୍କ ଭାଷାରେ- "ଛାତିର ପଞ୍ଜର ଜାଲିୟେ ଧରେ ଏଗେଇ ଚଲୋ ରେ" । ଯେଉଁମାନେ ଅଗ୍ରଗତି ପାଇଁ କୃତସଂକଳ୍ପ, ସେମାନଙ୍କୁ ଅନ୍ତରର ଅଗ୍ନି ଆଲୋକ ଦେଖାଇଥାଏ, ବାଟ ବଢ଼ାଇ ନିଏ । ଗୁଣନିଧିବାବୁ ପ୍ରଖ୍ୟାତ ଐତିହାସିକ, ସୁସାହିତ୍ୟିକ କେଦାରନାଥ ମହାପାତ୍ରଙ୍କର ଅନୁଜ । ସେ ପଣ୍ଡିତ ନୀଳମଣି ମିଶ୍ରଙ୍କ ସହିତ ମିଶି, କେଦାରନାଥଙ୍କ ପ୍ରୟାତ ପ୍ରାଣର ପ୍ରେରଣା ଘେନି କେଦାରନାଥ ଗବେଷଣା ପ୍ରତିଷ୍ଠାନ ଗଢ଼ିଥିଲେ । କୁହାଯାଏ - "ଘୋଡ଼ାକୁ ଚିହ୍ନିବ ତାର ଗତିରୁ," ସେହିପରି ଅନୁଷ୍ଠାନର ପରିଚୟ ପାଇବା ତାର "କାର୍ଯ୍ୟକ୍ରମ"ରୁ । କେଦାରନାଥ ଗବେଷଣା ପ୍ରତିଷ୍ଠାନର ପ୍ରତିଷ୍ଠା ଓ ପରିଚୟ ତା'ର କାର୍ଯ୍ୟକ୍ରମ ଓ ପ୍ରକାଶନ ଏବଂ ଗୁଣବାବୁ ଏହାର ପ୍ରତିଷ୍ଠାତା - ସଭାପତି । ତାଙ୍କର ଅନୁମୋଦନ ଓ ଉଦ୍ୟମରେ ସବୁ ହୁଏ । ସମସ୍ତଙ୍କ ମନନେଇ, ସମସ୍ତଙ୍କୁ ସାଙ୍ଗରେ ନେଇ, ବିଭିନ୍ନ ସ୍ତରରେ ବିଭିନ୍ନ ଲୋକଙ୍କ ସହିତ ସମ୍ପର୍କ ରଖି କାମ କରିବା ଥିଲା ତାଙ୍କର କାର୍ଯ୍ୟ କରିବାର ଶୈଳୀ । ସେ କାହା

ପ୍ରଶଂସାରେ ଭାସି ଯାଉ ନଥିଲେ କି କାହା ନିନ୍ଦା ବା ବିରୋଧରେ ବିଚଳିତ ହେଉ ନଥିଲେ । ଧୀର ବୁଦ୍ଧି ସ୍ଥିର ଚିତ୍ତରେ ଯାହା ଯେଉଁ ବିଧିରେ କରିବା ଉଚିତ୍ ବୋଲି ଭାବୁଥିଲେ, ତାହା କରିଯାଉଥିଲେ । ତେଣୁ ତାଙ୍କ ସାଙ୍ଗରେ ଯେଉଁମାନେ କାମ କରୁଥିଲେ, ସେମାନେ ତାଙ୍କରି ଅଦୃଶ୍ୟ ପ୍ରେରଣାରେ ଅନୁପ୍ରେରିତ ହୋଇଥିଲେ, ପ୍ରତିଷ୍ଠାନର କାର୍ଯ୍ୟକ୍ରମକୁ ଚଳାଇ ରଖିବେ ବୋଲି ରଖିବେ ବୋଲି ବିଚାରିବାରେ ଅସଙ୍ଗତି ବା ଅଯୌକ୍ତିକତା ନାହିଁ । ସଭାପତିର ଚଉକୀରୁ ସେ ଫଟୋ ଭିତରକୁ ଯାଇଛନ୍ତି । ସେଇଠି ଥାଇ ତାଙ୍କରି ପ୍ରେରଣା ଦେଉ ଥାଆନ୍ତୁ ।

ପ୍ରଦୀପର ପ୍ରଭା ତା'ର ପରିଚୟ । ସେହିପରି କୁଳର କୌଳିନ୍ୟ ରକ୍ଷା କରୁଥିବା ସନ୍ତାନ କୁଳ ଉଜ୍ଜ୍ୱଳ କରେ । ଗୁଣବାବୁ ତାଙ୍କର "ବଡ଼ ଭାଇନା ଓ ମୋ ପାଠପଢ଼ା ବେଳ" ପ୍ରବନ୍ଧରେ ଲେଖିଯାଇଛନ୍ତି "ବଡ଼ ଭାଇନା ମୋର କେବଳ ଭାଇ ନଥିଲେ, ମୋର ଶିକ୍ଷକ ମଧ ଥିଲେ । ସେ ଆମ ପରିବାରର ଗୌରବ ଏବଂ ତାଙ୍କ ହେତୁ ଆମେ ଅନେକ ମହଲରୁ ସ୍ନେହ, ଶ୍ରଦ୍ଧା ଓ ସଦିଚ୍ଛା ଲାଭ କରିଛୁ । କିନ୍ତୁ ଗୁଣବାବୁ ତାଙ୍କ ପରିବାର ପ୍ରତି, ତାଙ୍କ ଦିବଂଗତ ପ୍ରଚଣ୍ଡପ୍ରତିଭାଶାଳୀ ବିଦ୍ୱାନ ବଡ଼ଭାଇଙ୍କ ପ୍ରତି ଥିବା ଶ୍ରଦ୍ଧା ଓ ସମ୍ମାନକୁ ଅତ୍ୟନ୍ତ ମର୍ଯ୍ୟାଦାବନ୍ତ ସ୍ଥାନରେ ବସାଇ ଦେଇଛନ୍ତି; ତାଙ୍କ ବଡ଼ ଭାଇନାଙ୍କର ଦୁଇ ତିନି ଆଲମିରା ପୁସ୍ତକ ବା ନିଜସ୍ୱ ଗ୍ରନ୍ଥାଗାର ସହିତ ସ୍ୱରଚିତ ପୁସ୍ତକ ଓ ପାଣ୍ଡୁଲିପିକୁ ନେଇ ପରିବାର ବାହାରେ, ପରିବାରର ଗୋଟିଏ ଜମିକୁ ଦାନ କରାଇ, ସେଠାରେ ପ୍ରତିଷ୍ଠାନଟିଏ ଆରମ୍ଭ କରାଇଯିବା ଦ୍ୱାରା । ଏହିପରି ଦୀପଟିକୁ ଗୁଖାରେ ଥୋଇଦେଲା ଭଳି କାର୍ଯ୍ୟଟିଏ ସେ କରିଦେଇଛନ୍ତି । ଏହି ତ୍ୟାଗ ବୃଥା ଯିବ ନାହିଁ ।

ଗୁଣବାବୁ ଥିଲେ ଅଜାତଶତ୍ରୁ । କେବେ କାହାରି ଅମଙ୍ଗଳ ଚିନ୍ତା କରିନାହାନ୍ତି । ଯେଉଁମାନଙ୍କୁ ଜାଣିଥିଲେ, ଯେଉଁମାନଙ୍କ ସହିତ କିଛି ନା କିଛି ସଂପର୍କ ଥିଲା, ସେମାନଙ୍କର ବିପଦଆପଦରେ ଛିଡ଼ା ହେଉଥିଲେ, ଏଇ ମନୋଭାବ ତାଙ୍କୁ ଅନେକଙ୍କ ଅନ୍ତରରେ ମୁରବି ଆସନ ଦେଇଥିଲା । ତାଙ୍କର ଅବର୍ତ୍ତମାନରେ ଯେଉଁ ଶୂନ୍ୟତାବୋଧ ସଂଚରି ଯାଇଛି, ତାହା ତାଙ୍କର ଦିବଂଗତ ଆତ୍ମାର ଆଶୀର୍ବାଦରୁ ଅପସରି ଯାଉ । ତାଙ୍କ ଭଳି ସଂପର୍କକୁ ସଂଗଠିତ ଓ ବିସ୍ତାରିତ କରି, ତାଙ୍କ ହାତଗଢା ଅନୁଷ୍ଠାନ ଭାବରେ ତିଷ୍ଠି ରହୁ, ତାହା ହିଁ ହେବ ତାଙ୍କ ପ୍ରତି ଉପଯୁକ୍ତ ଶ୍ରଦ୍ଧାଞ୍ଜଳି ।

ଏତିକି ଲେଖି, ଲେଖାଟି ସାରିବା ବେଳେ ଉଦାରମନା ଗୁଣନିଧି ବାବୁଙ୍କର ଆନ୍ତରିକତା ଉଛୁଳି ଆସୁଥିବା ନିରଳସ ନିରହଙ୍କାର ଭାବମୂର୍ତ୍ତି ମନଶ୍ଚକ୍ଷୁରେ ଉଭାହୋଇ ଗଲା ଭଳି ଲାଗୁଛି । ବିରଳ ସେ ବ୍ୟକ୍ତି । ଦୁର୍ଲଭ ସେ ବ୍ୟକ୍ତିତ୍ୱ ।

ଉପସଭାପତି,

କେଦାରନାଥ ଗବେଷଣା ପ୍ରତିଷ୍ଠାନ



# ଗୁଣନିଧି ମହାପାତ୍ର ଓ କେଦାରନାଥ ଗବେଷଣା ପ୍ରତିଷ୍ଠାନ

-ଭାଗୀରଥି ମହାପାତ୍ର

୰ ଗୁଣନିଧି ମହାପାତ୍ର ପୁରୁଣା ଭୁବନେଶ୍ୱରର ଏକ ବିରଳ ବ୍ୟକ୍ତିତ୍ୱ । ଦଳ, ମତ ଓ ବୟସ ନିର୍ବିଶେଷରେ ସେ ସମସ୍ତଙ୍କ ସହ ମିଶି କାର୍ଯ୍ୟ କରିପାରୁଥିଲେ । କଂଗ୍ରେସର ସେ ଜଣେ ପୁରୁଣା ସଭ୍ୟ କିନ୍ତୁ ମୁଖ୍ୟମନ୍ତ୍ରୀଙ୍କ ବିଭିନ୍ନ କାର୍ଯ୍ୟକ୍ରମରେ ଉପସ୍ଥିତ ରହି ପୁରୁଣା ଭୁବନେଶ୍ୱରର ଉନ୍ନତି ବିଷୟରେ ସେ ତାଙ୍କୁ ପ୍ରଶଂସା କରିଥାନ୍ତି । ପ୍ରତ୍ୟେକ କ୍ଲବ ଓ ଅନ୍ୟାନ୍ୟ ସାମାଜିକ ଅନୁଷ୍ଠାନର ନିମନ୍ତ୍ରଣରେ ସାମିଲ ହୋଇଥାନ୍ତି । ମୋ ସହିତ ବ୍ୟକ୍ତିଗତ ଭାବେ ତାଙ୍କର ପ୍ରାୟ ତିରିଶି ବର୍ଷର ପରିଚୟ । ଆମର କେଦାରଗୌରୀ କ୍ଲବ୍‌ରେ ଗଣେଶ ପୂଜା, ସରସ୍ୱତୀ ପୂଜା, ଓ ଅନ୍ୟାନ୍ୟ କାର୍ଯ୍ୟକ୍ରମରେ ଓ ଭୋଜିରେ ସାମିଲ ହୋଇ ସେ ମୋ ସହିତ ହୃଦୟଖୋଲା କଥାବାର୍ତ୍ତା ହୋଇଥାନ୍ତି । ମୋ ପାରିବାରିକ ଭଲମନ୍ଦରେ ସେ ସର୍ବଦା ଉପସ୍ଥିତ ରହନ୍ତି ଓ  ଆବଶ୍ୟକୀୟ ଉପଦେଶ ଦେଇଥାନ୍ତି । ତାଙ୍କର ଦୁଃଖଦ ବିୟୋଗରେ ମୁଁ ପ୍ରଥମେ ମୋର ବିନମ୍ର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

କେଦାରନାଥ ଗବେଷଣା ପ୍ରତିଷ୍ଠାନ ୰ ପଣ୍ଡିତ ନୀଳମଣି ମିଶ୍ର ଓ ୰ଗୁଣନିଧି ମହାପାତ୍ରଙ୍କ ମାନସ ସନ୍ତାନ କହିଲେ ଅତ୍ୟୁକ୍ତି ହେବ ନାହିଁ । ସେ ଏହି ସଂସ୍ଥାର ପ୍ରତିଷ୍ଠାତା ସଭାପତି ଏବଂ ୰ ମିଶ୍ର ସମ୍ପାଦକ ଥିଲେ । ଗୋଟିଏ ଶବ୍ଦରେ କହିଲେ ୰ ମହାପାତ୍ର କେଦାରନାଥ ଗବେଷଣା ପ୍ରତିଷ୍ଠାନର ପ୍ରାଣ ଓ ଆତ୍ମା ଅଟନ୍ତି । ତାଙ୍କ ଭାଇ ୰ କେଦାର ନାଥ ମହାପାତ୍ରଙ୍କ ସ୍ମୃତି ଉଦ୍ଦେଶ୍ୟରେ ଏହାର ସୃଷ୍ଟି । ଆଜି ପର୍ଯ୍ୟନ୍ତ ଏହି ସଂସ୍ଥାର ସ୍ଥିତି ଏବଂ ଅଗ୍ରଗତି ପାଇଁ ୰ ଗୁଣନିଧି ମହାପାତ୍ର ମୁଖ୍ୟତଃ ଦାୟୀ । ୨୦୦୬ ପୂର୍ବରୁ ମୁଁ ଏହି ସଂସ୍ଥାର ଆଜୀବନ ସଭ୍ୟଥିବା ସତ୍ତ୍ୱେ ସଂସ୍ଥାର କାର୍ଯ୍ୟକ୍ରମରେ ମୋର କିଛି ଭୂମିକା ନଥାଏ । ୨୦୦୬ରେ ତାଙ୍କର ବାରମ୍ବାର ଅନୁରୋଧ ଏବଂ କେତେକ ଗୁରୁତ୍ୱପୂର୍ଣ୍ଣ ପରିଚ୍ଛଳନା ସମିତି ସଭ୍ୟଙ୍କ ଫୋନ୍‌ରେ ଅନୁରୋଧକୁ ରକ୍ଷାକରି ମୁଁ ଏହି ସଂସ୍ଥାର ସଂପାଦକ ଦାୟିତ୍ୱ ତୁଲାଇଲି  ।  ଏ ସଂସ୍ଥାରେ କରିଥିବା କାର୍ଯ୍ୟ ପାଇଁ କେବଳ ସଭାପତିଙ୍କ ଖୋଲାଖୋଲି ପ୍ରଶଂସା ମୋତେ ପ୍ରେରଣା ଯୋଗାଇଥିଲା  । ୨୦୦୬ ଠାରୁ ଅଜି ପର୍ଯ୍ୟନ୍ତ ସଂସ୍ଥାର ରୌପ୍ୟ ଜୟନ୍ତୀ ପାଳନ, କେଦାରନାଥଙ୍କ ଶତବାର୍ଷିକୀ ପାଳନ, ବିଭିନ୍ନ ଜାତୀୟ ଓ ରାଜ୍ୟସ୍ତରୀୟ ଆଲୋଚନାଚକ୍ର ଆୟୋଜନ ଏବଂ ପୂଜ୍ୟପୂଜା ଆୟୋଜନ ଇତ୍ୟାଦି ଏହି ସମୟର ମୁଖ୍ୟ କାର୍ଯ୍ୟାବଳୀ ଅଟେ । ଏହାର ବିଷଦ୍ ବିବରଣୀ ଏଠାରେ ଲେଖିବା ସମ୍ଭବ ନୁହେଁ । ବର୍ତ୍ତମାନ ସୁଦ୍ଧା ସଂସ୍ଥାର ନିତ୍ୟ ନୈମିତ୍ତିକ କାର୍ଯ୍ୟ ୰ ସଭାପତି, ଉପସଭାପତି ଓ ଯୁଗ୍ମ ସଂପାଦକଙ୍କ ସହଯୋଗକ୍ରମେ ଚାଲୁ ରହିଛି  ।

ଅନୁଭୂତିକୁ ଅକୁଣ୍ଠ ପ୍ରକାଶ କ୍ରମେ ମୁଁ କହିପାରେ ଯେ ୰ ଗୁଣନିଧି ମହାପାତ୍ରଙ୍କର କେଦାରନାଥ ଗବେଷଣା ପ୍ରତି ନିଷ୍ଠା, ଶ୍ରଦ୍ଧା ଓ ତ୍ୟାଗ ଅନ୍ୟ କାହାଠାରୁ ଆଶା କରିବା ବୃଥା  । ସେ ଏହାକୁ ନିଜ ପରିବାରର ସମ୍ମାନବୋଧକ ସଂସ୍ଥା ଭାବି ସମସ୍ତ ଆବଶ୍ୟକତା, ଯଥା: ଟଙ୍କା, ଗାଡ଼ି ମଟର, ବ୍ୟକ୍ତିଗତ ପ୍ରଭାବ ସମସ୍ତ ବିନିଯୋଗ କରି ପକାଉଥିଲେ ଆବଶ୍ୟକ ପଡ଼ିଲେ  । ମୋତେ ଓ ଯୁଗ୍ମ ସଂପାଦକଙ୍କୁ ପ୍ରେରଣା ଓ ପରାମର୍ଶ ଦେବା ସହ ଆମ ପ୍ରସ୍ତାବଗୁଡ଼ିକ ଆଗ୍ରହରେ ଗ୍ରହଣ କରୁଥିଲେ  । ଏପରି ଅନ୍ୟ କେହି କରିବ ବୋଲି ମୋର ବିଶ୍ୱାସ ନାହିଁ  । ତାଙ୍କ ବିକଳ୍ପ କେବେ ବି ମିଳିବେ ନାହିଁ  ।

ଏହି ପ୍ରତିଷ୍ଠାନର ଉତ୍ତରୋତ୍ତର ଉନ୍ନତି ଏବଂ ୰ ମହାପାତ୍ରଙ୍କର କେତେକ ଅପୂରଣୀୟ ଇଚ୍ଛାକୁ ପୂରଣ କରିବା ତାଙ୍କର ଅମର ଆତ୍ମାପ୍ରତି ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ବିବେଚିତ ହେବ ।

**ସଂପାଦକ : କେଦାରନାଥ ଗବେଷଣା ପ୍ରତିଷ୍ଠାନ**

# ମଣିଷକୁ ବିଶ୍ୱାସ କରୁଥିଲେ ସେ

-ଭାଗୀରଥି ମହାସୁଆର

ତାଙ୍କୁ ପିଲାଦିନୁ ଦେଖି ଆସିଛି । ଜଣେ ଆଦର୍ଶ ସଂସାରୀ ମଣିଷ ବ୍ୟତୀତ ଆଉ କିଛି ତାଙ୍କ ଭିତରୁ ଆବିଷ୍କାର କରିବାକୁ ମନ ହୋଇନାହିଁ । ସେ ହେଲେ ମୋ' ନନାଙ୍କ ସହପାଠୀ, ବନ୍ଧୁ ଓ ପ୍ରଶଂସକ "ଗୁଣବାବୁ" । ସମସ୍ତଙ୍କ ପାଖରେ ତାଙ୍କ ପରିଚୟ ଗୁଣନିଧି ମହାପାତ୍ର । ଅନେକ ବିଶେଷଣ ତାଙ୍କ ବ୍ୟକ୍ତିତ୍ୱର, ଯାହା ମୁଁ ଶୁଣିଛି ତାଙ୍କ ଜୀବଦ୍ଦଶାରେ ଓ ଏବେ ବି ତାଙ୍କ ଅବର୍ତ୍ତମାନରେ ।

ଲୋକେ କହନ୍ତି ସେ ଜଣେ ରାଜନୀତିଜ୍ଞ । ଅତି ନିକଟରେ ଥାଇ ପିଲାରୁ ବୁଢ଼ା ହେବା ଭିତରେ ମୁଁ ଏପରି କିଛି ଲକ୍ଷଣ ତାଙ୍କ ଭିତରେ ଦେଖି ନାହିଁ । ଦେଖିଛି ମହତାବଙ୍କୁ, ସତ୍ୟପ୍ରିୟ ବାବୁଙ୍କୁ, ନନ୍ଦିନୀ ଶତପଥୀଙ୍କୁ, ନୀଳମଣି ରାଉତରାୟଙ୍କୁ ଅତି ନିକଟରୁ ଓ ବିଜୁବାବୁଙ୍କୁ ଟିକେ ଦୂରରୁ । ରାଜନୀତିଜ୍ଞଙ୍କ ବୁଦ୍ଧି ଆଗରେ ତାଙ୍କ ହୃଦୟ ହାର୍‌ମାନେ । ବେଳେବେଳେ ବୁଦ୍ଧି ବାନ୍ଧି ପକାଏ ବିବେକକୁ । କିନ୍ତୁ ଗୁଣବାବୁଙ୍କୁ ବିବେକ ସବୁବେଳେ ଚଢ଼ି ବସିଥାଏ ବୁଦ୍ଧି ଉପରେ । ହୃଦୟ ସଂପୂର୍ଣ୍ଣ ସ୍ୱାଧୀନ ଥିଲା ଆଜୀବନ । ଏ ମଣିଷକୁ ରାଜନୀତିଜ୍ଞ କହିବାକୁ ସାହସ ହୁଏନି ।

ନଗରପାଳ ଭାବେ ତାଙ୍କୁ ଅନେକ ପ୍ରଶଂସା ମିଳିଛି । ଏହା ମୋତେ ପ୍ରଭାବିତ କରି ପାରି ନାହିଁ । କାରଣ, ସମାଜସେବାରେ ନିରନ୍ତର ବ୍ରତୀ ଥାଇ ତାଙ୍କ ଜୀବନରେ ନଗରପାଳ ପଦବୀ ଆସିଯାଇଥିଲା । ସେ ଯଦି ନଗରପାଳ ହୋଇ ନ ଥାନ୍ତେ, ତେବେ ତାଙ୍କ ଗୁଣ ଓ କର୍ମରେ ଏବଂ ସର୍ବୋପରି ଲୋକାଦୃତିରେ କୌଣସି ପାର୍ଥକ୍ୟ ଆସି ନଥାନ୍ତା । ତାଙ୍କ ସମାଜସେବାରୁ ରାଜନୀତି ଉପକୃତ ହୋଇଛି; କିନ୍ତୁ ସେ ରାଜନୀତିକୁ ଲକ୍ଷ୍ୟ ରଖି ସମାଜସେବା କରି ନାହାନ୍ତି ।

ଆଧୁନିକ ରାଜନୀତିଜୀବୀମାନେ ନିଜ ସଂସାର କଥା ବୁଝନ୍ତି ? ଘରୋଇ ବ୍ୟାପାରରେ ସବୁ ନ୍ୟସ୍ତ କରିଦିଅନ୍ତି ସହଧର୍ମିଣୀ ଓ ସହାୟକମାନଙ୍କ ଉପରେ । ବାପ ବାଁ ପଟେ ଗଲେ, ପିଲାମାନେ ଡାହାଣ ପଟକୁ ରହିଯାନ୍ତି । କିନ୍ତୁ ଗୁଣ ବାବୁ କେବେ ବି ଅବହେଳା କରି ନାହାନ୍ତି ନିଜ ପରିବାରର ସବୁ ଟିକନିଖି କଥାକୁ । ମୂଳ ପୈତୃକ କୁଟୁମ୍ବ ଅର୍ଥାତ୍ ବୈଦ୍ୟ ପରିବାରର ପ୍ରତ୍ୟେକ ସମସ୍ୟାରେ ସକ୍ରିୟ ଜଡ଼ିତ ଥାଆନ୍ତି । ଗାଁ, ଗଳିର ସମସ୍ୟା ସବୁବେଳେ ଆଖିଆଗରେ ଥାଏ । ତା' ସହିତ ପୁଅ ନାତିଙ୍କ ବ୍ୟବସାୟ ପ୍ରତିଷ୍ଠାନର ଭଲମନ୍ଦ, ଝିଅ ଘରର ଦୁଃଖସୁଖ ଓ ସବୁ ବନ୍ଧୁବାନ୍ଧବ ଓ ପରିଚିତଙ୍କ ସମସ୍ୟାକୁ ମନଧ୍ୟାନ ଦେଇ ଗ୍ରହଣ କରନ୍ତି । ଯେଉଁ ଅନୁଷ୍ଠାନରେ ସେ ଥିଲେ, ସେ ଅନୁଷ୍ଠାନଟିକୁ ନିଜ ପରିବାର ଭଳି ଦେଖୁଥିଲେ ଓ ପଦପଦବୀ ନିର୍ବିଶେଷରେ ଜୋତା ସିଲେଇରୁ ଚଣ୍ଡୀପାଠଯାଏ ସବୁଥିରେ ସକ୍ରିୟ ରହୁଥିଲେ । ନିର୍ଦ୍ଧୁମ ଖରାରେ ଶୀତଳଷଷ୍ଠୀ ପାଇଁ ଚାନ୍ଦା ଆଦାୟ, କର୍ମୀ ଅଭାବରେ କେଦାରନାଥ  ଗବେଷଣା ପ୍ରତିଷ୍ଠାନର ଚିଠିରେ ଟିକଟ ଲଗାଇବା, ବ୍ରାହ୍ମଣ ସମିତିର ଚିଠିଗୁଡ଼ିକ ନିଜେ ନେଇ ଡାକରେ ପାକାଇବା ଓ ବୁଲି ବୁଲି ଧର୍ମଶାଳାର ପ୍ରତି ଅଂଶର ପରିସ୍ଥିତି ଦେଖିବା ମଣିଷଟି ଜଣେ ପକ୍କା ସଂସାରୀ । ନେତା ତ'ପରକୁ ବୋଲ ବତାଇ ନିଜେ ବାହାଦୁରୀ ନିଅନ୍ତି ।

ସେ କର୍ମୀ ହୋଇ ଜନ୍ମ ହୋଇଥିଲେ, ଅହରହ କର୍ମ କରି ବଞ୍ଚୁଥିଲେ ଓ କର୍ମରେ ସ୍ଥାଣୁତା ଆସୁଥିଲେ ବିବ୍ରତ ହେଉଥିଲେ । ଦୈନନ୍ଦିନ ରୁଟିନ୍‌ରେ ଆହାର, ବିହାର, ବିଶ୍ରାମ ପରି ଜଡ଼ିତ ଥିଲା ସମାଜର ଚିନ୍ତା ଓ ସଂପୃକ୍ତ ଅନୁଷ୍ଠାନ ମାନଙ୍କର ଚିନ୍ତା । ନେତା ବା ରାଜନୀତିଜ୍ଞଙ୍କ ପରି ତାଙ୍କର ଦିନଚର୍ଯ୍ୟାରେ କୌଣସି ବିଶୃଙ୍ଖଳା ନଥିଲା ।

ଚଳନ୍ତା ଗାଡ଼ି ଗ୍ୟାରେଜ୍‌ରେ ପଡ଼ି ରହିଗଲେ ଅଚଳ ହୋଇଯାଏ । ଗୋଟିଏ ଛୋଟ ଦୁର୍ଘଟଣା ତାଙ୍କ ଦିନଚର୍ଯ୍ୟାକୁ ଠପ୍ କରିଦେଲା । ଏହି ସ୍ଥାଣୁତା ତାଙ୍କୁ, ତାଙ୍କର ଶରୀରର ଯନ୍ତ୍ରାଂଶମାନଙ୍କୁ ଓ ତାଙ୍କର ମନୋବଳକୁ କ୍ରମଶଃ ଶିଥିଳ କଲା, ଅଚଳ କଲା ଓ ଶେଷରେ ସ୍ଥବିର କରିଦେଲା । ସମସ୍ତେ କହିଲେ ସେ ଚାଲିଗଲେ । ମୁଁ କିନ୍ତୁ ନିଶ୍ଚିତ ଯେ ସେ ଘୂଲୁ ଘୂଲୁ ରହିଗଲେ । ରହଣିଆ ଶରୀର ପଚନଶୀଳ, ତେଣୁ ବିଧିମତେ ତାଙ୍କର ଦାହ ସଂସ୍କାର ହେଲା ।

ସେ ମଣିଷଙ୍କୁ ବିଶ୍ୱାସ କରୁଥିଲେ । ଋଷିମୁନି ହୁଅନ୍ତୁ ବା ରାଜନେତା ହୁଅନ୍ତୁ କେବେବି ସାଧାରଣ ମଣିଷକୁ ନିଃସର୍ତ୍ତ ବିଶ୍ୱାସ କରନ୍ତି ନାହିଁ । କାରଣ ସେମାନେ ଆବେଗବିବର୍ଜିତ । ଆବେଗ ହୃଦୟରୁ ହିଁ ଆସେ । ହୃଦୟବାନ୍ ହିଁ ଆଦର୍ଶ ବିଶ୍ୱାସୀ ହୁଏ । ଏଣୁ ଆଦର୍ଶ ବିଶ୍ୱାସୀ ଗୁଣବାବୁଙ୍କ ବିଶ୍ୱାସ ତାଙ୍କ ଅବର୍ତ୍ତମାନରେ ରକ୍ଷା କରିବାକୁ ହେବ । ଏଇ ପ୍ରତିଶ୍ରୁତି ସହ ମୁଁ ଦେଖୁଥିଲି ତାଙ୍କ ଚିତାନଳକୁ । ସେ ଚିତା କୌଣସି ନେତା ବା ନଗରପାଳଙ୍କର ନଥିଲା । ନିଗୁଡ଼ା ଗୁଣନିଧି ମହାପାତ୍ରଙ୍କର ହିଁ ଥିଲା ।

ଯୁଗ୍ମ ସଂପାଦକ
କେଦାରନାଥ ଗବେଷଣା ପ୍ରତିଷ୍ଠାନ

# ଝୁରିହେବା ପରି ମଣିଷଟିଏ

-ପ୍ରଫେସର ଗଣେଶ ପ୍ରସାଦ ଦାସ

ନିର୍ବ୍ୟକ୍ତିକ ଭାବ, ଅମାୟିକ ସ୍ୱଭାବ, ଶୁଦ୍ଧମତି ଓ ସହଜଗତିର ମଣିଷ ସ୍ୱର୍ଗତ ଗୁଣନିଧି ମହାପାତ୍ର, ଭୁବନେଶ୍ୱରର ଅନ୍ୟତମ ମୂଳବାସିନ୍ଦା ଭାବରେ ତା'ର ନଅ ଦଶନ୍ଧିର ଇତିହାସ, ଭୁଗୋଳ ଅଙ୍ଗେ ନିଭେଇଥିବା ଓ ପ୍ରଥମ ନଗରପାଳ ଭାବରେ ଭୁବନେଶ୍ୱର ବାସିନ୍ଦାମାନଙ୍କର ସେବାକରିଥିବା ଗୁଣନିଧି ଥିଲେ ଆମର ଜଣେ ମହାମାନ୍ୟ ଅଭିଭାବକ ।

ବଡ଼ଭାଇଙ୍କ ନାମରେ ନାମିତ କେଦାରନାଥ ଗବେଷଣା ପ୍ରତିଷ୍ଠାନର ସେ ସଭାପତି ଥିଲେ, ପ୍ରତିଷ୍ଠାନକୁ ପ୍ରତିଦିନ ଆସନ୍ତି ଭକ୍ତ ମନ୍ଦିରକୁ ଆସିବା ଭଳି, ଯେତେ ସଭାହୁଏ ସେଥିରେ ସଭାପତିତ୍ୱ କରନ୍ତି ଓ ତାଙ୍କ ସରଳ ଓ ସଂକ୍ଷିପ୍ତ ଅଭିଭାଷଣରେ ସବୁଥର କହନ୍ତି ଗୋଟିଏ କଥା- "ମୁଁ ବକ୍ତା ନୁହେଁ, ମୁଁ ଜଣେ କର୍ମୀ, ଏ ଅନୁଷ୍ଠାନ ଆପଣମାନଙ୍କର, ଆପଣ ସବୁବେଳେ ଆସୁଥିବେ, ଅନୁଷ୍ଠାନକୁ ଚଳାଇବା ଦାୟିତ୍ୱ ଆପଣମାନଙ୍କର" । ଅନୁଷ୍ଠାନଟିଏ ଗଢ଼ି, ତାକୁ ନିଜର ସନ୍ତାନ ଭଳି କିପରି ପାଳିପୋଷି ବଡ଼ କରାଯାଏ, ଜଣେ ଗୁଣନିଧିଙ୍କଠାରୁ ଶିଖିବ ।

ଏପ୍ରିଲ ୨୦ ତାରିଖରେ ବଡଭାଇଙ୍କର ଶ୍ରାଦ୍ଧସଭା ହୋଇଥିଲା ପ୍ରତିଷ୍ଠାନରେ । ପ୍ରସାଦ ସେବନର ବ୍ୟବସ୍ଥା ହୋଇଥିଲା । ସେ ଜଣ ଜଣ କରି ସମସ୍ତଙ୍କ ଖାଇବା ତଦାରଖ କରିଥିଲେ ଓ ପାକ ରୁଚିପୂର୍ଣ୍ଣ ହୋଇଛି କି ନା ପଚାରି ବୁଝିଥିଲେ ଅନ୍ୟ ସବୁଥର ପରି । ପ୍ରତିଷ୍ଠାନରେ ତାହା ତାଙ୍କର ଶେଷସଭା ।

ତାଙ୍କ ସ୍ୱଚ୍ଛ ଚରିତ୍ରକୁ ବିଜ୍ଞାପିତ କରୁଥିବା ସ୍ୱଚ୍ଛ ମୁହଁଟିକୁ ଦେଖିଲେ ଯେ କେହି ତୃପ୍ତ ଓ ଆଶ୍ୱସ୍ତ ବୋଧ କରିବ । ମୃତ୍ୟୁଶଯ୍ୟାରେ ମଧ ସେହି ମୁହଁ ଆଖି ଆଗରେ ନାଚିଯାଉଛି । ସୁସ୍ଥ ଦେହମନଧାରୀ ଏହି "ଯୁବକ" ଜଣକ ଶହେ ବର୍ଷ ପାରି କରିବ ବୋଲି ମୁଁ ଭାବିଥିଲି । ନିୟତିର ହିସାବ ଓ ବ୍ୟବସ୍ଥା ଆମପାଇଁ ଦୁର୍ଜ୍ଞେୟ । ଘରେ ପାହାଚ ଝୁଣ୍ଟାଇ ଦେଲା ଯେ ଆଉ ଉଠିବାକୁ ଦେଲାନାହିଁ ! ନିୟତିକୁ 'ଦାରୁଣ' ବୋଲି କହି ନିଜର ବିଜ୍ଞତା ଦେଖାଇବାକୁ ଚାହୁଁନାହିଁ । ବରଂ ପ୍ରାର୍ଥନା କରୁଛି ଯେ ପୃଥିବୀରେ ଅନେକାନେକ ଗୁଣନିଧି ଅବତୀର୍ଣ୍ଣ ହୁଅନ୍ତୁ ଏବଂ ଭଗବଦ୍‌ଗୀତା ବର୍ଣ୍ଣିତ ଲୋକସଂଗ୍ରହରେ ନିଜକୁ ବିନିଯୋଗ କରନ୍ତୁ ।

ରତାୟନୀ, ୩୯୬, ପାଇକ ନଗର
ଭୁବନେଶ୍ୱର - ୭୫୧୦୦୩

# ସମ୍ମାନାସ୍ପଦ 'ଆଜ୍ଞା' ଙ୍କ ସ୍ମରଣେ

-ଶରତ ଚନ୍ଦ୍ର ନନ୍ଦ

'ଆଜ୍ଞା' ବୋଲି ସସମ୍ମାନେ ଆପଣଙ୍କୁ ସମ୍ବୋଧନ କରୁଥିଲି ମୁଁ, ଯଥେଷ୍ଟ ସମ୍ମାନର ଅଧିକାରୀ ଭାବେ ଆପଣଙ୍କ ଠାରେ ପୂରି ରହିଥିଲା ଅନେକ ଭଲଗୁଣ । ମୋ ପ୍ରତି ଆପଣଙ୍କର ଥିଲା ଅଶେଷ ସ୍ନେହ ଶୁଭଦୃଷ୍ଟି । ଆପଣ ମତେ ପ୍ରଥମ ଦିନରୁ ହିଁ ଡାକୁଥିଲେ 'ନନ୍ଦେ ଆପଣେ' । ମୋ ଠାରେ ଆପଣ କି ବିଶେଷତ୍ୱ ଦେଖିଥିଲେ କେଜାଣି, ଗୋଟିଏ ଦିନର ବାର୍ତ୍ତାଳାପରେ ମୋତେ ଆପଣଙ୍କ ଟିମ୍‌ରେ ଗ୍ରହଣ କରି ନେଇଥିଲେ । କେଦାରନାଥ ଗବେଷଣା ପ୍ରତିଷ୍ଠାନର ସମ୍ପାଦକ ଶ୍ରୀଯୁକ୍ତ ଭଗବାନ ପଣ୍ଡା ମୋତେ ସେତେବେଳେ ଏ ବିଷୟରେ କହିଥିଲେ । ବାସ୍ତବିକ୍, ମଣିଷ ଚିହ୍ନିବାରେ ଆପଣ ଥିଲେ ସିଦ୍ଧହସ୍ତ ।

ମୁଁ 'ନନ୍ଦ ଆପଣେ' ଆପଣଙ୍କୁ ପ୍ରଣାମ ଜଣାଉଛି । ଆଜ୍ଞା ଆପୋଲୋ ହସ୍‌ପିଟାଲରେ ଅପରେସନ୍ ହେବା ପୂର୍ବଦିନ ଆପଣଙ୍କ ସହ କଥାବାର୍ତ୍ତା ହୋଇଥିଲି । ମତେ ଲାଗିଲା ଯେପରି ଆପଣଙ୍କର ଆହୁରି ବହୁତ କିଛି କାମ କରିବାର ବାକି ଅଛି । ହସପିଟାଲ୍‌ରୁ ଡିସ୍‌ଚାର୍ଜ ହେଲେ ଲାଗିପଡ଼ିବେ ପୁଣି ଫୁଲ୍ ଦମରେ । ବିନୋଦିନୀଙ୍କ ଠାରୁ ଖବର ପାଇଲି ଆପଣ ଚାଲିଗଲେ । କିଛିଟା ଶୂନ୍ୟସ୍ଥାନ ଅନୁଭବ କଲି ମୋ ହୃଦୟରେ ।

କାମ କରିବା ଆଉ କରାଇବାର ତରିକା ଆପଣଙ୍କୁ ଠିକ୍ ଜଣା । ତେଣୁ ବୟସ ଆପଣଙ୍କ ପାଖରେ ହାରମାନିଲା । ବେଳେବେଳେ ବାହାରକୁ ବିଷଣ୍ଣ ଓ ଦୁର୍ବଳ ଦେଖଯାଉଥିଲେ ମଧ୍ୟ ଆପଣ ମାନସିକ ସ୍ତରରେ ଦୃଢ଼ ରହିଥିଲେ । ଆଉ ସେଥିପାଇଁ ନିଜେ ସବୁକିଛି ଠିକ୍‌ଠିକ୍ କରୁଥିଲେ ଓ କରାଇ ପାରୁଥିଲେ ।

ଆପଣ ଥିଲେ ବିଶେଷ ଧୀଶକ୍ତିସମ୍ପର୍ଣ୍ଣ । ବିଭିନ୍ନ ଅନୁଷ୍ଠାନକୁ ଚଳାଇବା ନିମନ୍ତେ ଆପଣଙ୍କର ଆପ୍ରାଣ ଉଦ୍ୟମ ଆପଣଙ୍କୁ ଆପଣଙ୍କ କର୍ତ୍ତବ୍ୟପଥରେ ଦୃଢ଼କରି ରଖିଥିଲା ନିଶ୍ଚୟ ।

କେଦାରନାଥ ଗବେଷଣା ପ୍ରତିଷ୍ଠାନରେ ପୃଷ୍ଠପୋଷକତା କରି ଆପଣ ସୁସ୍ଥ ସାଂଗଠନିକ ମାନସିକତାର ଉପଯୁକ୍ତ ନିଦର୍ଶନ ଦେଖାଇପାରିଛନ୍ତି ।

ମୋ ଜୀବଦ୍ଦଶାରେ ଆପଣଙ୍କ ଭଳି ଜଣେ ମହାନ କର୍ମବୀରଙ୍କ ସାନ୍ନିଧ୍ୟ ଲାଭ କରି ମୁଁ ନିଜକୁ ଧନ୍ୟ ମନେ କରୁଅଛି । ପ୍ରଭୁ ଲିଙ୍ଗରାଜ ଆପଣଙ୍କ ଆତ୍ମାକୁ ସଦଗ୍ତି ପ୍ରଦାନ କରନ୍ତୁ ଏତିକି ପାର୍ଥନା ।

୩୯, ନାଗେଶ୍ୱରଟାଙ୍ଗୀ

ହାଉସିଂବୋର୍ଡ କଲୋନୀ, ଭୁବନେଶ୍ୱର - ୭୫୧୦୦୨

# ଗୁଣମାନଙ୍କର ନିଧି : ଗୁଣନିଧି

-ନାରାୟଣ ବ୍ରହ୍ମା

ବିଭିନ୍ନ ଢ଼ଙ୍ଗରେ ବିଭିନ୍ନ ରଙ୍ଗରେ ଭୁବନେଶ୍ୱରର ପୌର ପ୍ରଶାସନ ପ୍ରାରମ୍ଭରୁ ଗତିକରି ମଝିରେ ଏପରି ଏକ ଅବସ୍ଥା ଆସିଲା, ଯେଉଁଥିରେ ରେଳପଥର ପୂର୍ବକୁ ଥିବା ଗ୍ରାମବାସୀମାନେ ପୌରସଭାପାଇଁ ନିର୍ବାଚନ କରାଇବାକୁ ଦାବୀ କଲେ । ମାତ୍ର ଅନ୍ୟ ପଟରେ ଭୋଟରମାନେ ହେଲେ ମୁଖ୍ୟତଃ ସରକାରୀ କର୍ମଚାରୀ ଏବଂ ମୁଷ୍ଟିମେୟ ବ୍ୟବସାୟୀ । ସେମାନେ ସ୍ଥାୟୀ ବାସିନ୍ଦା ନୁହଁନ୍ତି । ତେଣୁ ସେମାନେ କିପରି ଓ କାହାପାଇଁ ପ୍ରତିନିଧିତ୍ୱ କରିବେ, ଏ ଏକ ବଡ଼ ପ୍ରଶ୍ନ ଅସମାହିତ ହୋଇ ରହିବା ବେଳେ ନିକଟବର୍ତ୍ତୀ ଗ୍ରାମବାସୀଙ୍କ ତରଫରୁ ପ୍ରତିନିଧି ନିର୍ବାଚିତ ହୋଇ ଆସିବାଟା ଯୁକ୍ତିଯୁକ୍ତ ମନେ ହେଲା । ସତ୍ୟପ୍ରିୟ ମହାନ୍ତି ମଧ୍ୟ ବାଟ ବାହାର କରିବାକୁ ଉପ ପକାଇଲେ । ଶେଷରେ ଗୋଟିଏ ସ୍ୱତନ୍ତ୍ର ଆଇନ୍ ପ୍ରଣୟନ ହେଲା । ତାର ନାମ ହେଲା "Odisha N.A.C. Partly Nominated and Partly Elected Rule" ଏହି ନିୟମ ଅନୁସାରେ ସରକାରୀ କର୍ମଚାରୀ ରହୁଥିବା ଅଂଚଳରୁ କେତେକ ବ୍ୟକ୍ତିଙ୍କୁ ସରକାର ମନୋନୀତ କରିବେ ଏବଂ ଗ୍ରାମମାନଙ୍କରୁ ବ୍ୟକ୍ତି ନିର୍ବାଚିତ ହେବେ । ଯେହେତୁ ସରକାରୀ କର୍ମଚାରୀଙ୍କ ସଂଖ୍ୟା ଅଧିକ, ମନୋନୀତ କାଉନସିଲରଙ୍କ ମଧ୍ୟରୁ ଜଣେ ନିର୍ବାଚିତ ନଗରପାଳ ହେବେ ।

ଏହି ବ୍ୟବସ୍ଥା ଅନୁସାରେ ଟାଉନ୍‌ପ୍ଲାନର ଶ୍ରୀ ଡି. ଆର୍. କେ. ପଟ୍ଟନାୟକ ଚେଆରମ୍ୟାନ ଓ ଗୁଣନିଧି ମହାପାତ୍ର ପ୍ରଥମ ନିର୍ବାଚିତ ଭାଇସ୍ ଚେୟାରମ୍ୟାନ୍ ରୂପେ ଯୋଗ ଦେଲେ । ତାଙ୍କୁ N.A.C.ର Public Health and Medical Committee ର ଅଧ୍ୟକ୍ଷ ରୂପେ କାର୍ଯ୍ୟ କରିବାକୁ କ୍ଷମତା ଦିଆଗଲା ।

ମାତ୍ର ଗୁଣନିଧି ମହାପାତ୍ର ଏବଂ ଅନ୍ୟ ନିର୍ବାଚିତ ସଦସ୍ୟମାନେ ଏଥିରେ ଖୁସି ନଥାନ୍ତି । ଚେୟାରମ୍ୟାନ୍ ପଦବୀଟି କିପରି ନିର୍ବାଚିତ ପ୍ରତିନିଧିମାନଙ୍କ ମଧ୍ୟରୁ ଜଣେ ପାଇବେ, ସେଥିପାଇଁ ସମସ୍ତେ ଚିନ୍ତିତ ଥାଆନ୍ତି । ଗୁଣନିଧି ବାବୁ ଏବଂ ଅନ୍ୟମାନେ ହରେକୃଷ୍ଣ ମହତାବ୍ ଏବଂ ସତ୍ୟପ୍ରିୟ ମହାନ୍ତିଙ୍କ ସହ ଘନ ଘନ ଆଲୋଚନା କରୁଥାନ୍ତି । ମୁଁ ୧୯୫୭ରେ ତତ୍‌କାଳୀନ ସ୍ୱାସ୍ଥ୍ୟ ଓ ସ୍ୱାୟତ୍ତ ଶାସନ ବିଭାଗରେ ଜଣେ କର୍ମଚାରୀ ଭାବେ ଯୋଗଦେଇ ପୌର ଆଇନ୍ କାନୁନ୍ ଏବଂ ପୌର ପ୍ରଶାସନ ଉପରେ ଦକ୍ଷତା ଅର୍ଜନ କରିସାରିଥାଏ । ସତ୍ୟପ୍ରିୟ ମହାନ୍ତି ଅନେକ ବର୍ଷଧରି ସ୍ୱାୟତ୍ତ ଶାସନ ବିଭାଗ ମନ୍ତ୍ରୀ ଥିବାବେଳେ ମୋତେ ଏବଂ ମୋର ଦକ୍ଷତାକୁ ଭଲ ଭାବେ ଜାଣିଥାନ୍ତି । ପୁନଶ୍ଚ ସତ୍ୟପ୍ରିୟ ମହାନ୍ତିଙ୍କ ଅତି ନିକଟତର ସ୍ୱାଧିନତା ସଂଗ୍ରାମୀ ସର୍ବେଶ୍ୱର ପଣ୍ଡା ମୋର ଶ୍ୱଶୁର ବୋଲି ସତ୍ୟପ୍ରିୟ ବାବୁ ଜାଣିଥାନ୍ତି । ତେଣୁ ସେ ଦିନେ ମୋତେ ତାଙ୍କ ଘରକୁ ଡ଼କାଇ ପଠେଇଲେ । ସେଇଠି ମୁଁ ଗୁଣନିଧି ମହାପାତ୍ରଙ୍କୁ ଜାଣିଲି ।

ଉଭୟେ ବିଭିନ୍ନ ଆଇନ୍‌ଗତ ପ୍ରଶ୍ନ ପଚାରୁଥାନ୍ତି, ମୁଁ ଉତ୍ତର ଦେଉଥାଏ । ପୁରୁଣା ଭୁବନେଶ୍ୱରର ଉନ୍ନତି ପାଇଁ ଉଭୟେ ବ୍ୟସ୍ତ ଥାଆନ୍ତି । ପ୍ରଥମ ପ୍ରଶ୍ନ ଉଠିଲା କ'ଣ କଲେ ନିର୍ବାଚିତ ପ୍ରତିନିଧି ଚେୟାରମ୍ୟାନ୍ ହେବେ । ଆଇନ୍‌କୁ ତର୍ଜମା କରି ମୋର ମତ ହେଲା, ନିକଟବର୍ତ୍ତୀ ଗ୍ରାମମାନଙ୍କୁ N.A.C.ସୀମା ମଧ୍ୟକୁ ନ ଆଣିଲେ ଏବଂ ସାଧାରଣ ଜନସଂଖ୍ୟା ସରକାରୀ କର୍ମଚାରୀଙ୍କ ସଂଖ୍ୟାରୁ ଅଧିକ ନହେଲେ ଏହା ସମ୍ଭବ ନୁହେଁ । ଅବଶ୍ୟ କ୍ୟାପିଟାଲ୍ ଇଷ୍ଟେଟ

ଏରିଆ ଏବଂ Master Plan ଏରିଆ N.A.C.ଏରିଆଠାରୁ ଖୁବ୍ ଅଧିକ । ତେଣୁ ସ୍ଥିର ହେଲା, ଗୁଣବାବୁ ଅନ୍ୟମାନଙ୍କୁ ଧରି ନୂତନ ଗ୍ରାମମାନ N.A.C. ସୀମାଭୁକ୍ତ କରିବାକୁ ପୁରୀ ଜିଲ୍ଲାପାଳଙ୍କ ଜରିଆରେ ପ୍ରସ୍ତାବ ଦେବେ । ତାକୁ ସରକାରରେ ତଦ୍‌ବିରି କରିବାକୁ ମୁଁ ଚେଷ୍ଟା କରିବି । ଠିକ୍ ସମୟରେ ସତ୍ୟପ୍ରିୟବାକୁ ଚାପ ପକାଇବେ । ସେଇଆ ହେଲା । ଫଳରେ ପରବର୍ତ୍ତୀ ନିର୍ବାଚନରେ ଗୁଣନିଧି ମହାପାତ୍ର N.A.C. ର ପ୍ରଥମ ନିର୍ବାଚିତ ଚେୟାରମ୍ୟାନ୍ ହେଲେ ।

ସେଠାରେ ୨ୟ ପ୍ରଶ୍ନ ଉଠିଥିଲା ଗୁଣନିଧି ବାବୁ ତ' ଚେୟାରମ୍ୟାନ୍ ନୁହଁନ୍ତି, ତେବେ Old Town ର ବିକାଶ ମୂଳକ କାର୍ଯ୍ୟ କିପରି ହୋଇପାରିବ । ଆଲୋଚନା ବେଳେ ମୁଁ ମତ ଦେଲି ଯେ ସରକାରଙ୍କ ଠାରୁ ଗ୍ରାଣ୍ଟ ଆକାରରେ ଯାଉଥିବା ଟଙ୍କା N.A.C.ଏରିଆରେ ଖର୍ଚ୍ଚ ହେବ । ନିର୍ବାଚିତ ପ୍ରତିନିଧିମାନେ କାଉନ୍‌ସିଲରେ ପ୍ରସ୍ତାବ ଗୃହୀତ କରାଇଦିଅନ୍ତୁ । ସରକାରୀ ଅନୁମୋଦନ ମିଳିଯିବ । ତା ଛଡା, ନିଉଟାଉନ୍ ଏରିଆରେ ସର୍ବତ୍ର ରାସ୍ତା ଓଳିଆଁ ନଥିଲା । ରାସ୍ତା ନିର୍ମାଣ ଓ ମରାମତି P.W.D କରୁଥିଲା । କିଛି ଅସୁବିଧା ହେବନି ।

ଫଳରେ ଗୁଣନିଧିବାବୁ ବହୁମାତ୍ରାରେ ଉତ୍ସାହିତ ହୋଇ Old Town ଏରିଆରେ ରାସ୍ତା ନିର୍ମାଣ, ମରାମତି, ରାସ୍ତାପାର୍ଶ୍ୱ ନାଳ, ରାସ୍ତା ଆଲୋକ, ରାସ୍ତା, ପାଇଖାନା ସଫେଇ ଆଦି ବହୁ ଉନ୍ନତି ମୂଳକ କାର୍ଯ୍ୟ କରିଗଲେ ଯାହାକୁ କି ପୁରୁଣା ଭୁବନେଶ୍ୱରବାସୀ କେବେ ହେଲେ ଆଶା କରିନଥିଲେ । ମନ୍ଦିର ପାର୍ଶ୍ୱରେ ଥିବା ପୂରାତନ District Board ଡାକ୍ତରଖାନା, ଯାହାପରେ N.A.C. କୁ ହସ୍ତାନ୍ତର ହୋଇଥିଲା, ତାର ମଧ ବହୁ ଉନ୍ନତି ତାଙ୍କ ସମୟରେ ହୋଇଛି । ମୁନିସିପାଲ୍ ଆଇନ୍‌ର ତର୍ଜମା ଓ କାର୍ଯ୍ୟକାରିତା ଉପରେ ତାଙ୍କର କୌଣସି ସଂଦେହ ଉପୁଜିଲେ, ସେ ମୋର ସାହାଯ୍ୟ ନେବାକୁ ପଛାନ୍ତି ନାହିଁ ।

ସେ ଏପରି ଏକ ସରଳ ଓ ସ୍ନେହୀ ଲୋକ ଥିଲେ ଯେ, ଥରେ ଯେ ତାଙ୍କ ସଂସ୍ପର୍ଶରେ ଆସିଛି, ସେ ତାଙ୍କୁ ଭୁଲି ପାରିବ ନାହିଁ । "କେଦାର ନାଥ ଗବେଷଣା ପ୍ରତିଷ୍ଠାନ"ର ଆତ୍ମା ସିନା କେଦାରନାଥ ମହାପାତ୍ର, ମାତ୍ର ଗୁଣନିଧି ମହାପାତ୍ର ସେ ଅନୁଷ୍ଠାନର ସ୍ଥୁଳ ଶରୀର, ଚଳନ୍ତି ପ୍ରତିମା, ବଡ଼ପଣ୍ଡା, ରଥି, ସେନାପତି, ଆଲୋକ ବର୍ତ୍ତିକା, ଆଉ କିଛି ଏବଂ ସବୁ ।

ତା'ଙ୍କ ଆତ୍ମାର ସଦ୍‌ଗତି ହେଉ ବୋଲି କହିବି ନାହିଁ । କାରଣ, ତାଙ୍କ ଆତ୍ମା ଯଦି ପରମାତ୍ମାରେ ଲୀନ ନ ହେବ, କାହାର ଆଉ ହେବ ?

**୨୪୦/୨୫, ଲେନ୍ ନଂ୯**

**ଏରୋଡ୍ରମ୍ ଏରିଆ**

**ଭୁବନେଶ୍ୱର**

# ଗୁଣନିଧି ମହାପାତ୍ର ଏକ ବ୍ୟକ୍ତି ନୁହଁନ୍ତି. ଏକାଧିକ ଅନୁଷ୍ଠାନର ସମାହାର

-ସଂଘମିତ୍ରା ମିଶ୍ର

ଗୁଣନିଧି ମହାପାତ୍ର ଏକ ବ୍ୟକ୍ତି ନୁହଁନ୍ତି ଏକାଧିକ ଅନୁଷ୍ଠାନର ସମାହାର । ଏକ ନାମ ନୁହେଁ ଏକ ଅନୁଭବ । ସେ ଅନୁଭବ ଭିତରେ ସଦା ହସ ହସ ମୁହଁର ଏକ ବୟସ୍କ ମଣିଷର ମୁହଁ ଦିଶିଯାଏ, ଯେ ନିଜ ଉପସ୍ଥିତିକୁ ଜାହିର କରେ ନାହିଁ, କିନ୍ତୁ ଯାହାର ଉପସ୍ଥିତିରେ ସମଗ୍ର ପରିବେଶରେ କର୍ମତତ୍‌ପରତା ଆସିଯାଏ । ତାଙ୍କୁ ଦେଖିଛି ମୁଁ ଆମ ପିଲାଙ୍କର ନିର୍ବନ୍ଧ ଓ ବିଭାଘରରେ । ଦେଖିଛି କେଦାରନାଥ ଗବେଷଣା ପ୍ରତିଷ୍ଠାନ ପରିସରରେ ସବୁ ସଭାସମିତିରେ । ବଡ଼ଭାଇଙ୍କ ସ୍ମୃତି ଉଦ୍ଦେଶ୍ୟରେ ଏଭଳି ପାଠାଗାର ଓ ସାଂସ୍କୃତିକ ମିଳନପୀଠ ନିର୍ମାଣ କରିବା ତାଙ୍କ ପକ୍ଷରେ ହିଁ ସମ୍ଭବ ଥିଲା । ବହୁ ବିଳମ୍ବରେ ଜାଣିଲି ସେ ଭୁବନେଶ୍ୱର ମ୍ୟୁନିସିପାଲ୍‌ଟିର ପ୍ରଥମ ଅଧକ୍ଷ ଥିଲେ । କିନ୍ତୁ ତାଙ୍କୁ ଦେଖିଲେ ମନେ ହେଉଥିଲା ସେ ଅଧକ୍ଷ ହିଁ ଅଛନ୍ତି ଓ ରହିବେ । ଭୁବନେଶ୍ୱର ପାଇଁ ତାଙ୍କ ଚିନ୍ତାର ଅନ୍ତ ନଥିଲା । ତେଣୁ ହୁଏତ ମୋ ସ୍ୱାମୀ ଡାକ୍ତର ଜଗନ୍ନାଥ ମହାପାତ୍ର ମ୍ୟୁନିସିପାଲ୍‌ଟି ଚେୟାରମ୍ୟାନ ହେବାବେଳେ ସେ ବାରମ୍ବାର ନିଜ ଅନୁଭୂତିରୁ ଉଦାହରଣ ଦେଇ ତାଙ୍କୁ ବହୁ ସମୟରେ ପରିଣତି ସଚେତନ କରୁଥିଲେ ।

ମୋ କଥା କହେ । ମୋତେ ବାରମ୍ବାର ସେ କେଦାରନାଥ ଗବେଷଣା ପ୍ରତିଷ୍ଠାନକୁ ଅତିଥି କରି ଡାକିଛନ୍ତି । କାର୍ଡ ଖଣ୍ଡିଏ ଧରି ନିଜେ ଆସନ୍ତି । ମୁଁ ବ୍ୟସ୍ତହୁଏ । "କାହା ହାତରେ ପଠାଇ ଦେଇଥାଆନ୍ତେ, ନାହିଁ ତ ଫୋନ୍ କରି ଦେଇ ଥାଆନ୍ତେ, ଆସିଲେ କାହିଁକି ?" ସେ କହନ୍ତି, "ତୁମେ ପରା ଆମ ଅତିଥି । ନିଜେ ଆସି ନ ଡାକିଲେ ହେବ କେମିତି ?" ଅନେକ ସଭାରେ ସେ ସଭାପତିତ୍ୱ କରୁଥିଲେ । କ୍ରମେ ମାନନୀୟ ନୀଳମଣି ମିଶ୍ରଙ୍କ ଦେହାନ୍ତ ପରେ କେଦାରନାଥ ଗବେଷଣା ପ୍ରତିଷ୍ଠାନ ସହିତ ମୋର ସଂପର୍କ ଟିକେ ଶିଥିଳ ହୋଇଯାଇଛି । ମାତ୍ର ଆଜିଯାଏ ନିମନ୍ତ୍ରଣ ପତ୍ରମାନ ମୋ ଠିକଣାରେ ଆସୁଛନ୍ତି ।

ଗତବର୍ଷ ଗୁଣନିଧିବାବୁଙ୍କର ନବେ ବର୍ଷ ପୂର୍ତ୍ତି ଉପଲକ୍ଷେ 'ସମ୍ବାଦ' ଆନୁକୁଲ୍ୟରେ ଏକ ସମର୍ଦ୍ଧନା ଉତ୍ସବ ଅନୁଷ୍ଠିତ ହୋଇଥିଲା । ଓଡ଼ିଶାର ଗଣମାଧ୍ୟମ ତଥା ସାଂସ୍କୃତିକ ଜଗତରେ ସୁପରିଚିତ ବ୍ୟକ୍ତିତ୍ୱ ଶ୍ରୀଯୁକ୍ତ ସୌମ୍ୟରଂଜନ ପଟ୍ଟନୟକ ସେଠାରେ ଗୁଣନିଧି ବାବୁଙ୍କର ଗୁଣ ତଥା ଅବଦାନ ବର୍ଣ୍ଣନା କରିଥିଲେ । ଅନେକ ବଂଧୁ ଶୁଭେଚ୍ଛୁ ତଥା ଗୁଣନିଧିବାବୁଙ୍କୁ ଭଲପାଇବା ବ୍ୟକ୍ତିମାନଙ୍କ ସହିତ ମୁଁ ସେ ସଭାରେ ଯୋଗ ଦେବାର ବିରଳ ସୌଭାଗ୍ୟ ପାଇଥିଲି ଓ ତାଙ୍କ କଥା ଶୁଣିଥିଲି । ମଞ୍ଚରେ ସେ ଚଉକିଟିରେ ବସିଥିଲେ ଓ ଫୁଲତୋଡାମାନ ଧରି ସ୍ୱଭାବ ସୁଲଭ ଭଂଗୀରେ ହସୁଥିଲେ । ସେ ହସ ଆଉ ଦିଶିବ ନାହିଁ । ଭୁବନେଶ୍ୱର ଭଳି କ୍ରମବର୍ଦ୍ଧିଷ୍ଣୁ ସହରରେ ଆଉ ସର୍ବମାନ୍ୟ ମୁରବୀ ମିଳିବେ ନାହିଁ, ଯିଏ ନ ଡାକୁଣୁ ଯାଇ ସମସ୍ତଙ୍କ ଦୁଃଖସୁଖରେ ସାମିଲ ହେବେ । ଆଜିର SMS ଯୁଗରେ କେହି ସାହିତ୍ୟ ସଭାର ଅତିଥିଙ୍କ ଘରକୁ ନିମନ୍ତ୍ରଣ ଦେବାକୁ ଯିବେ ନାହିଁ ବା କେଉଁ ଉଦ୍ୟୋକ୍ତା ଜଣ ଜଣ କରି ଅତିଥିଙ୍କ ଭଲମନ୍ଦ ପଚାରିବେ ନାହିଁ । ସେ ସମୟ ଗୁଣନିଧି ବାବୁଙ୍କ ଦେହାବସାନ ସହିତ ଅନ୍ତ ହୋଇଛି ଗୋଟିଏ ଅନୁଷ୍ଠାନ ଗଢ଼ିବାକୁ କେତେ ତ୍ୟାଗ ଓ ତପସ୍ୟା ଲୋଡା, ତାହା ଗୁଣନିଧି ବାବୁଙ୍କୁ ଦେଖିଲେ ହିଁ ବୁଝି ହେଉଥିଲା । ଆଜି ସେ ସ୍ୱଶରୀରରେ ନାହାନ୍ତି କିନ୍ତୁ ତାଙ୍କ ହାତଗଢ଼ା ଅନୁଷ୍ଠାନ ଅଛି । ତାଙ୍କୁ ଭଲ ପାଉଥିବା, ମୁରବୀ ବୋଲି ସ୍ୱୀକାର କରୁଥିବା ତାଙ୍କର ପ୍ରିୟ ମଣିଷମାନେ ଅଛନ୍ତି । ସବୁ ଠିକ୍ ଚାଲିବ ଏ ଭରସା ମଧ ଅଛି ମାତ୍ର ଗବେଷଣା ପ୍ରତିଷ୍ଠାନର ଉତ୍ସବମାନଙ୍କରେ ଗୋଟିଏ ଚଉକି ଅବଶ୍ୟ ଖାଲି ରହିବ ତାଙ୍କ ସ୍ମୃତିକୁ ବହନ କରି । ତାଙ୍କର ଓଡ଼ିଆ ଭାଷା, ସାହିତ୍ୟ, ଇତିହାସ, ପ୍ରତ୍ନତତ୍ତ୍ୱ ସଂପର୍କୀୟ ଆଗ୍ରହ ବଂଚି ରହିବ ତାଙ୍କ ଉତ୍ତରାଧିକାରୀମାନଙ୍କ ଭିତରେ । ଗୁଣନିଧି ମହାପାତ୍ର ଅନେକ ସୁଗୁଣର ସମାହାର ଥିଲେ । ତାଙ୍କୁ ଅବା ମୁଁ କେତେ ଜାଣିଥିଲି ? ତଥାପି ମୁଁ ତାଙ୍କର ସ୍ନେହର ବଳୟ ଭିତରେ ଥିଲି । ଏତିକି ତାଙ୍କୁ ମନେ ପକାଇବାପାଇଁ ଯଥେଷ୍ଟ ।

ତାଙ୍କୁ ମୋର ପ୍ରଣାମ ଜଣାଉଛି । ସେ ଦିବ୍ୟଧାମରେ ଥାଇ ତାଙ୍କ ପରିବାର ତଥା ତାଙ୍କୁ ଭଲପାଉଥିବା ସମସ୍ତଙ୍କୁ ଆଶୀର୍ବାଦ କରନ୍ତୁ । ଦୀର୍ଘ ସଫଳ ଜୀବନର ଅଧିକାରୀ ଗୁଣବାବୁ ଦୀର୍ଘଦିନ ଆମ ସ୍ମୃତିରେ ଓ ତାଙ୍କ କର୍ମପାଇଁ ଜୀବନ୍ତ ରହିବେ । ତାଙ୍କ ପାଇଁ ଦି'ଧାଡି ଲେଖିବାର ସୁଯୋଗ ଦେଇଥିବାରୁ ମୁଁ ଉଦ୍ୟୋକ୍ତମାନଙ୍କ ନିକଟରେ କୃତଜ୍ଞ ।



# ଶେଷଦେଖା କରିପାରିଲିନି

-ଡଃ. ଜଗନ୍ନାଥ ମହାପାତ୍ର

ଗୁଣନିଧି ମହାପାତ୍ର ଆମଭିତରୁ ବିଦାୟ ନେବାର ଋହୁଁ ଋହୁଁ ଦଶଦିନ ହେଲାଣି । ମୃତ୍ୟୁ ଖବର ପାଇଲି ସାନୁ ପରିଜା ଆଉ ବାବୁଲି ସମର୍ଥଙ୍କ ଠାରୁ । ଠିକ୍ ସମୟରେ ପହଞ୍ଚି ପାରିଲିନି କି ଅନ୍ତିମ ଦର୍ଶନ କରିପାରିଲିନି । ଗରାବନ୍ଧୁ ଶ୍ମଶାନରେ ତାଙ୍କର ଚିତା ଜଳି ସାରିଥିଲା । ଘରେ ମାଲ୍‌ଭାଇ ଖାଇବାର ଆୟୋଜନ ଋଲିଥିଲା । ତାଙ୍କର ପତ୍ନୀଙ୍କୁ ନିରବରେ ନମସ୍କାର କରି ସେଠାରୁ ଫେରିଆସିଲି । ତାଙ୍କ ପାଇଁ ଦୁଇପଦ ଲେଖିବାକୁ ହେବ । ଗୁଣନିଧି ବାବୁ ଭୁବନେଶ୍ୱର ମ୍ୟୁନିସିପାଲିଟିର ପ୍ରଥମ ଚେୟାରମ୍ୟାନ । ଭୁବନେଶ୍ୱରକୁ ଜୀବନ୍ତ ସହରଭାବେ ସେ ଅନୁଭବ କରୁଥିଲେ । ସେ ଥିଲେ ଭୁବନେଶ୍ୱରର ସର୍ବମାନ୍ୟ ମୁରବୀ । ମୁଁ ଯେତେବେଳେ ଚେୟାରମ୍ୟାନ ହେଲି, ସେ ଅଯାଚିତ ଭାବରେ ମୋତେ ସହଯୋଗ କରିଥିଲେ । ଠିକ୍ ଅନୁଭବୀ ବଡ଼ ଭାଇଟି ଭଳି ମୋ ଦୁଃଖସୁଖରେ ସାମିଲ ହେଉଥିଲେ । ମୋ ପୁଅ ଝିଅଙ୍କ ନିର୍ବନ୍ଧ ସମୟରେ ସବୁ ଦାୟିତ୍ୱ ବୁଝୁଥିଲେ ଆତ୍ମୀୟ ଭଳି । ସେ ଥିଲେ ଐତିହାସିକ କେଦାରନାଥଙ୍କ ସାନ ଭାଇ । କେଦାରନାଥ ଗବେଷଣା ପ୍ରତିଷ୍ଠାନ ଗଢିବା ଓ ତାକୁ ଚଳାଇବାରେ ତାଙ୍କର ଯଥେଷ୍ଟ ନିଷ୍ଠା ଥିଲା । ବାରମ୍ବାର ବିଭିନ୍ନ ସଭାସମିତି କରିବା ଓ ପୁସ୍ତକ ପ୍ରକାଶନ କରାଇବାରେ ସେ ଆନନ୍ଦ ପାଉଥିଲେ । ଯୁବ ସାହିତ୍ୟିକମାନଙ୍କୁ ସେ ଶ୍ରଦ୍ଧା କରୁଥିଲେ ଓ ସେମାନଙ୍କ ରଚନାକୁ ବେଶ୍ ପସନ୍ଦ କରୁଥିଲେ । ମୋ ସହିତ ଦେଖାହେଲେ ଗୁଣ୍ଡଗୁଆ ଦିଆ ପାନଖଣ୍ଡେ ବଢ଼ାଇଦେଉଥିଲେ ବରାବର । କହୁଥିଲେ "ଡାକ୍ତରବାବୁ ଜମା କଡ଼ା ନୁହେଁ, ଏ ଖଣ୍ଡିକ ଖାଅ" । ତାଙ୍କର ଧୋତି ପଞ୍ଜାବୀ ପିନ୍ଧା ଗୋରା ତକ୍‌ତକ୍ ଚେହେରା ସାଙ୍ଗକୁ ଶିଶୁସୁଲଭ ସରଳ ହସ ତାଙ୍କ ବ୍ୟକ୍ତିତ୍ୱକୁ ଆହୁରି ମର୍ଯ୍ୟାଦାବନ୍ତ କରିଥିଲା । ସେ ଥିଲେ ଦୀର୍ଘ ସଫଳ ଜୀବନର ଅଧିକାରୀ । ତାଙ୍କ ପିଲାଏ ମଣିଷ ହୋଇଛନ୍ତି । ତାଙ୍କ ହାତଗଢ଼ା ଅନୁଷ୍ଠାନ ବଢ଼ିଋଲିଛି । ତାଙ୍କର ପ୍ରିୟ ଭୁବନେଶ୍ୱର, ଯାହାକୁ ସେ ଶୈଶବରେ ଗଢ଼ିଥିଲେ ସେ ବୟସର ମଧ୍ୟାହ୍ନରେ ଉପନୀତ । ତା'ପାଖରେ ଯୁବସୁଲଭ ଚପଳତା ଓ ପ୍ରବୀଣସୁଲଭ କର୍ମ ପ୍ରେରଣା ଏକାଠି ହୋଇଛି । ପୁରୁଣା ଭୁବନେଶ୍ୱରବାସୀଙ୍କ ଅତି ଆପଣାର ଗୁଣନିଧି ମହାପାତ୍ର ଆଜି ପରପାରିରେ । ତାଙ୍କ ଦୀର୍ଘ କର୍ମମୟ ଜୀବନର ଅବସାନ ଘଟିଛି । ତାଙ୍କ ସ୍ମୃତି ଉଦ୍ଦେଶ୍ୟରେ ମୁଁ ପ୍ରଣାମ କରୁଛି । ତାଙ୍କ ଆତ୍ମାର ସଦ୍‌ଗତି କାମନା କରିବା ସହିତ ତାଙ୍କ ପରିବାରକୁ ଏ ଦୁଃଖ ସହିବା ପାଇଁ ଶକ୍ତି ଦେବାକୁ ପୀଠ ଦେବତା ପ୍ରଭୁ ଲିଙ୍ଗରାଜଙ୍କୁ ମିନତି କରୁଛି ।

ପୂର୍ବତନ ନଗରପାଳ
ଭୁବନେଶ୍ୱର

# ପ୍ରଥମ ପୌରପାଳ ଗୁଣଗ୍ରାହୀ ଗୁଣନିଧି

- ରଘୁନାଥ ମିଶ୍ର

ପରମ ପାବନ ଏକାମ୍ର ପୂଣ୍ୟ କ୍ଷେତ୍ରରେ ଗୋଟିଏ ବୃନ୍ତରେ ଦୁଇ ସୁବାସିତ କୁସୁମ ସଦୃଶ ସୁରଭିତ ହୋଇଥିଲେ ଦୁଇ ଭାଇ କେଦାରନାଥ ଓ ଗୁଣନିଧି ମହାପାତ୍ର । ଭୁବନେଶ୍ୱରରେ ଐତିହ୍ୟ ପୀଠାଧୀଶ ତ୍ରିଭୁବନେଶ୍ୱର ଲିଙ୍ଗରାଜଙ୍କ ମାହାତ୍ମ୍ୟ, ପୂର୍ବ ପୁରୁଷ ଆୟୁର୍ବେଦ ବିଶାରଦ ମାନଙ୍କ ସଂସ୍କାର, ପାରିବାରିକ ଶାସନ ଶୃଙ୍ଖଳା, ସହୃଦୟତା ଓ ମଧୁମୟ ପରିବେଶ ଉଭୟଙ୍କ ଅଧ୍ୟବସାୟ, ଅଧ୍ୟୟନ ଓ ଅଭିବୃଦ୍ଧି ପାଇଁ ଥିଲା ଅନୁପ୍ରେରଣାର ଅସରନ୍ତି ଉତ୍ସ । ସେମାନଙ୍କ ଶ୍ରମ ସାର୍ଥକ ଓ ସ୍ୱପ୍ନ ସାକାର ହେଲା । ପ୍ରତିଷ୍ଠିତ ହେଲେ ସ୍ୱ ସ୍ୱ କର୍ମକ୍ଷେତ୍ରରେ ଦକ୍ଷତା ଓ ପାରଦର୍ଶିତା ପ୍ରଦର୍ଶନ କରି ଅତିକ୍ରମ କଲେ ଗୋଟିଏ ପରେ ଗୋଟିଏ ସଫଳତାର ପାହାଚ ଅବଲୀଳାକ୍ରମେ । ଉଦ୍‌ଭାସିତ ହେଲେ ସ୍ନେହ, ଶ୍ରଦ୍ଧା, ସୌଜନ୍ୟ, ସଦ୍‌ଭାବନା, ସୁବ୍ୟବହାର, ସହନଶୀଳତା, ସଂଯୋଗ ଓ ସମନ୍ୱୟର ଆଲୋକ ବର୍ତ୍ତିକା ରୂପେ । ଆଜି ଉଭୟେ ଦିବଂଗତ । ଆର୍ନ୍ତଜାତିକ ଖ୍ୟାତିସମ୍ପନ୍ନ ଐତିହାସିକ, ଗବେଷକ, ପ୍ରତ୍ନତତ୍ତ୍ୱବିଦ୍, ପୋଥିବିଶେଷଜ୍ଞ ଅଗ୍ରଜ କେଦାରନାଥଙ୍କ ମହାପ୍ରୟାଣ ହୋଇଥିଲା ତା ୨୦.୪.୧୯୮୧ ରେ ୭୦ ବର୍ଷ ବୟସରେ । ଅନୁଜ ଗୁଣନିଧି ୯୦ ବର୍ଷରେ ପଦାର୍ପଣ କରିଥିଲେ ମଧ୍ୟ ମୃତ୍ୟୁ ଅତ୍ୟନ୍ତ ଅପ୍ରତ୍ୟାଶିତ ଥିଲା । ଏ ଦୁଃସମ୍ବାଦ ମୋ ପାଇଁ ଅଶେଷ ବେଦନାଦାୟକ ଥିଲା ଏଇଥି ପାଇଁ ଯେ ମାତ୍ର ମାସକ ପୂର୍ବରୁ ତା୨୦.୦୪.୨୦୧୨ରେ କେଦାରନାଥଙ୍କ ଶ୍ରାଦ୍ଧ ସମାରୋହରେ ମୁଁ ତାଙ୍କ ସ୍ୱାସ୍ଥ୍ୟ ବିଷୟରେ ଜାଣିବାକୁ ଉତ୍ସୁକ ହେବାରୁ ସେ ଖୁବ୍ ଉତ୍ସାହିତ ହୋଇ ତାଙ୍କର ଉତ୍ତମ ସ୍ୱାସ୍ଥ୍ୟ ଓ ଶୃଙ୍ଖଳିତ ଦୈନନ୍ଦିନ ଜୀବନଚର୍ଯ୍ୟା ବିଷୟରେ ବେଶ୍ କିଛି ସମୟ କଥାବାର୍ତ୍ତା କରିଥିଲେ ଓ ସେ ନିୟମିତ ରାତି ଚାରିଟା ପୂର୍ବରୁ ଉଠି ନିତ୍ୟକର୍ମ, ପାରିବାରିକ ଜୀବନ ସମ୍ପର୍କିତ ଜରୁରୀ କାର୍ଯ୍ୟ, ଧର୍ମଶାଳା ପରିଚାଳନାଗତ ସମସ୍ତ ଦାୟିତ୍ୱ, କେଦାରନାଥ ଗବେଷଣା ପ୍ରତିଷ୍ଠାନ ସଭାପତିଙ୍କ କାର୍ଯ୍ୟାଳୟ ପ୍ରକୋଷ୍ଠ ଦାୟିତ୍ୱ ଯଥାରୀତି ତତ୍‌ପରତାର ସହିତ ସମ୍ପାଦନ କରୁଥିବା କଥା ଉଲ୍ଲେଖ କରିଥିଲେ । କିଛି ମାସ ପୂର୍ବରୁ "ସମ୍ବାଦ"ର ସୁଯୋଗ୍ୟ ସମ୍ପାଦକ ଶ୍ରୀଯୁକ୍ତ ସୌମ୍ୟରଞ୍ଜନଙ୍କ ପ୍ରତିଷ୍ଠିତ "ଆମ ଓଡ଼ିଶା" ଆନୁକୂଲ୍ୟରେ ଆୟୋଜିତ ସମ୍ବର୍ଦ୍ଧନା ସଭାରେ ତାଙ୍କର ଅନୁରୂପ ଅଭିବ୍ୟକ୍ତିରୁ ମୁଁ ଅଧିକ ଆଶାବାଦୀ ହୋଇଥିଲି ଯେ ସେ ନିଶ୍ଚୟ ଶତାୟୁ ହେବେ । କାରଣ କିଛିଦିନ ପରେ "ଆମ ଓଡ଼ିଶା" ଅନନ୍ୟ ସାରସ୍ୱତ ସାଧକ ନିତ୍ୟାନନ୍ଦ ମହାପାତ୍ରଙ୍କୁ ସମ୍ବର୍ଦ୍ଧିତ କରିଥିଲେ ଏବଂ ସେ ଶହେ ବର୍ଷରେ ପଦାର୍ପଣ କରିସାରିଥିଲେ । ମୋ ଆଶା, ଆଶାରେ ହିଁ ରହିଗଲା । ହୁଏତ ଏଥିପାଇଁ ସତେ କୁହାଯାଏ ବିଧିର ବିଧାନ ବିଚିତ୍ର । କେବଳ ସନ୍ତାପିତଙ୍କ ପାଇଁ ଆଶ୍ୱାସନା ଏହା ଯେ ଏ ବିଧାନ ମଧ୍ୟ ମାରାତ୍ମକ ନୁହେଁ ବୋଲି ବିଜ୍ଞବ୍ୟକ୍ତିମାନେ ମତ ପୋଷଣ କରି କହନ୍ତି -

"ମାରାତ୍ମକ ନୁହେଁ ମୃତ୍ୟୁବିଧାନ
ମୃତ୍ୟୁ ଅଟେ ଅମୃତର ସୋପାନ
ଜୀବନ-ମୃତ୍ୟୁର ଲୀଳା ରହସ୍ୟ
ମୃତ୍ୟୁ ମୃତ୍ତିକାରେ ଜୀବନ ଶସ୍ୟ
ବଢ଼ଇ ବିଚିତ୍ର ଭାବେ
ଲୋକ ଲୋକାନ୍ତରେ କାଳକାଳାନ୍ତରେ
ଆବିର୍ଭାବେ ତିରୋଭାବେ" ।

ପୁରୁଣା ଭୁବନେଶ୍ୱରରେ ଅନେକ ଦିନ ଯାଏ ସାଧାରଣ ଲୋକମାନେ ଚେୟାରମେନ ଗୁଣ ବଇଦ ବୋଲି କହୁଥିଲେ । ଗୁଣନିଧିବାବୁ ୧୯୭୨ରୁ ୧୯୭୬ ଯାଏଁ ଭୁବନେଶ୍ୱର ବିଜ୍ଞାପିତ ଅଞ୍ଚଳ ପରିଷଦର ଉପାଧକ୍ଷ ୧୯୭୬ ରୁ ୧୯୭୯ଯାଏଁ ନଗରପାଳ ଦାୟିତ୍ୱ ନିର୍ବାହ କରିଥିଲେ । ତା୧୪.୪.୧୯୭୯ରେ ବିଜ୍ଞାପିତ ଅଞ୍ଚଳ ପରିଷଦ ନଗରପାଳିକାରେ ପରିଣତ ହେଲା । ଗୁଣବାବୁ ପ୍ରଥମ ପୌରପାଳ ରୂପେ ଅଧିଷ୍ଠିତ ହୋଇଥିଲେ । ପୂର୍ବରୁ ସରକାରୀ ଚାକିରୀରେ ଥାଇ କୃଷି ଓ ଗୋଷ୍ଠୀ ଉନ୍ନୟନ କାର୍ଯ୍ୟରେ ବିପୁଳ ଅଭିଜ୍ଞତା ଅର୍ଜନ କରିଥିବା ଗୁଣନିଧିବାବୁ ପୌର ଉନ୍ନୟନ ଓ ପୌର ସେବାକାର୍ଯ୍ୟକୁ ମଧ ଖୁବ୍ କମ୍ ସମୟ ମଧରେ ଶୃଙ୍ଖଳିତ କରି ପାରିଥିଲେ । ଗୃହଟିକସ, ଲାଇସେନ୍ସ ଫିସ୍, ବିବିଧ ଫିସ୍ ତଥା ପଣ୍ୟକର ବାବତ ସୀମିତ ଆୟ ଓ ସ୍ୱଳ୍ପ ସରକାରୀ ଅନୁଦାନକୁ ପାଥେୟ କରି ସେ ରାସ୍ତା ଉନ୍ନୟନ, ନାଳ ନର୍ଦ୍ଦମା ନିର୍ମାଣ, ପୁନଃ ନିର୍ମାଣ, ପ୍ରାଥମିକ ସ୍କୁଲ ଗୃହ ନିର୍ମାଣ, ଡ଼ାକ୍ତରଖାନା, ହୋମିଓ ଚିକିତ୍ସାଳୟ ସ୍ଥାପନ, ବିନ୍ଦୁସାଗରର ପଙ୍କୋଦ୍ଧାର ଓ ସ୍ୱତନ୍ତ୍ର ମରାମତି, କ୍ଲବ ପାଠାଗାର ଓ ତତ୍ତୁଲ୍ୟ ଅନୁଷ୍ଠାନମାନଙ୍କୁ ସାହାଯ୍ୟ ଇତ୍ୟାଦି ଅନେକ ଲୋକ କଲ୍ୟାଣକର କାର୍ଯ୍ୟ କରାଇ ପାରିଥିଲେ । "ପୌରସେବା ସମୃଦ୍ଧି ପାଇଁ, ପୌର ସମୃଦ୍ଧି ସେବା ପାଇଁ" ସ୍ଲୋଗାନକୁ ସେ ପୌରମନ୍ତ୍ର ରୂପେ ଗ୍ରହଣ କରି ନେଇଥିଲେ ଓ ଦୈନନ୍ଦିନ ସଫେଇ କାର୍ଯ୍ୟକୁ ବିଶେଷ ଗୁରୁତ୍ୱ ଦେଉଥିଲେ । ଜଣେ ନିଷ୍ଠାପର ସମାଜସେବୀରୂପେ ନିଜକୁ ଗୁରୁତ୍ୱ ଦେଉଥିଲେ ।ପ୍ରତିଷ୍ଠିତ କରି ସେ ସହରର ସମସ୍ତ ଜନହିତକର କାର୍ଯ୍ୟକ୍ରମ ସହିତ ନିଜକୁ ଓତୋପ୍ରୋତ ଭାବେ ସଂଶ୍ଳିଷ୍ଟ କରିବା ସହିତ, ଶ୍ରୀ ଲିଙ୍ଗରାଜ ଓ କପିଳନାଥ ମନ୍ଦିର ପରିଚାଳନା ସମେତ ଅନ୍ୟ ସମସ୍ତ ଦେବାଦେବୀଙ୍କ ସେବାପୂଜା ଯେପରି ନିର୍ଦ୍ଧାରିତ ନୀତିନିୟମ ଅନୁଯାୟୀ ସମ୍ପୂର୍ଣ୍ଣ ହୁଏ ସେଥିପାଇଁ ନିଘା ରଖୁଥିଲେ । ଭୁବନେଶ୍ୱର ମୁନିସିପାଲିଟିରେ ୧୯୮୦ରୁ ୧୯୮୫ (ସାଢ଼େ ଚାରିବର୍ଷରୁ ଉର୍ଦ୍ଧ୍ୱ ସମୟ) ମୋର କାର୍ଯ୍ୟନିର୍ବାହୀ ଅଧିକାରୀ ରୂପେ କାର୍ଯ୍ୟକାଳ ମଧରେ ମୁଁ ଗୁଣନିଧିବାବୁଙ୍କ ଠାରୁ ସର୍ବଦା ସକାରାତ୍ମକ ସହଯୋଗ ପାଇ ଅନେକ କାର୍ଯ୍ୟକ୍ରମ ଓ ପ୍ରକଳ୍ପକୁ କାର୍ଯ୍ୟକାରୀ କରାଇ ପାରିଥିଲି, ଯାହା ଫଳରେ ଭୁବନେଶ୍ୱର ପୌରପାଳିକା ବର୍ଷ ବର୍ଷ ଧରି ରାଜ୍ୟର ଶ୍ରେଷ୍ଠ ପୌରସଂସ୍ଥାରୂପେ ପୁରସ୍କୃତ ହୋଇଥିଲା । ସାହିବସ୍ତିର ଜଟିଳ ସମସ୍ୟା, ପୌର କର୍ମଚାରୀମାନଙ୍କ ନାନାବିଧ ଦାବି ସମ୍ପର୍କିତ ସମସ୍ୟାଗୁଡ଼ିକୁ ଆପୋଷ ଆଲୋଚନା ମାଧମରେ ସମାଧାନ କରିବା ପାଇଁ ସେ ସତତ ପ୍ରସ୍ତାବ ପରାମର୍ଶ ଦେଉଥିଲେ ।

ବଡ଼ଭାଇନା କେଦାରନାଥଙ୍କ ପ୍ରତି ଗୁଣନିଧିଙ୍କ ଶ୍ରଦ୍ଧା, ସମ୍ମାନ, ଭକ୍ତି, ଭୟ ଓ ଆନୁଗତ୍ୟ ନିଜେ ନ ଦେଖିଥିଲେ

ସବୁମନ୍ତେ ସଫଳ ଓ ସର୍ବାଙ୍ଗସୁନ୍ଦର ହେବ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।

୧୯୮୨-୮୩ ମସିହାରେ ବଡ଼ଭାଇନାଙ୍କ ଅବର୍ତ୍ତମାନରେ ଗବେଷଣା ପ୍ରତିଷ୍ଠାନର ପ୍ରତିଷ୍ଠା ପ୍ରସ୍ତାବ ଗୁଣନିଧି ବାବୁଙ୍କୁ ଆନ୍ଦୋଳିତ କରିଥାଏ । ପ୍ରସ୍ତାବର ରୂପରେଖ ସଂକ୍ରାନ୍ତରେ ପ୍ରାଥମିକ ଆଲୋଚନା ପରେ ଗୃହ ନିର୍ମାଣ ପାଇଁ ତାଙ୍କ ମନୋନୀତ ସ୍ଥାନକୁ ଦେଖିବାକୁ ଯିବା ନିମନ୍ତେ ସେ ଇଚ୍ଛାପ୍ରକାଶ କରନ୍ତି ।

ସେତେବେଳେ ଗୃହ ନିର୍ମାଣ ନକ୍ସା ମଞ୍ଜୁରୀ କ୍ଷମତା ପୌରସଂସ୍ଥା ଉପରେ ନ୍ୟସ୍ତ ଥାଏ । ତେଣୁ ସ୍ଥାନ ପରିଦର୍ଶନର ଆବଶ୍ୟକତା ସେ ଉପଲବ୍ଧି କରିଥାନ୍ତି । ସ୍ଥାନଟି ବୁଲି ଦେଖିବା ପରେ ଏହା ଗବେଷଣା କେନ୍ଦ୍ର ପାଇଁ ସେର୍ବୋତ୍କୃଷ୍ଟ ହୋଇ ନ ପାରେ ଓ ଏଥିପାଇଁ ଭୁବନେଶ୍ୱର ଉପକଣ୍ଠରେ ସମ୍ଭବ ହେଲେ ଧଉଳି ନିକଟରେ ପାଞ୍ଚ ଏକର ପରିମିତ ସ୍ଥାନରେ ଏହା ସ୍ଥାପିତ ହେବା ସମୀଚୀନ ବୋଲି ମୁଁ ଉଲ୍ଲେଖ କରିବା ମାତ୍ରେ ସେ ହଠାତ୍ ବିଷର୍ଣ୍ଣ ଓ ବ୍ୟସ୍ତ ବିବ୍ରତ ହୋଇ ପଡ଼ିଲେ । ଆମେ ଫେରି ଆସିଲୁ । ସେ ଦିନ ନିଷ୍ପତ୍ତି ହୋଇ ପାରିଲା ନାହିଁ । ତାଙ୍କ ମନରେ ହୁଏତ ଆଶଙ୍କା ଜନ୍ମିଲା ଯେ ନକ୍ସା ମଞ୍ଜୁର ହେବନାହିଁ । ଦୁଇଦିନପରେ ଗୁଣବାବୁ ପୁଣି ପ୍ରସ୍ତାବଟିକୁ ଦୋହରାଇଲେ ଓ ଶକ୍ତିସମ୍ବଳ ଦୃଷ୍ଟିରୁ ବିକଳ୍ପ ସ୍ଥାନ ନିର୍ବାଚନ ସମ୍ଭବ ନୁହେଁ ବୋଲି କହିଲେ । ଗୁଣବାବୁ ଯେ ପ୍ରକାରାନ୍ତରେ କହିବାକୁ ଚାହୁଁଥିଲେ Best is the worst enemy of good, ତେଣୁ Best କୁ ଅପେକ୍ଷା ନ କରି ଆଜି ଯାହା good ତାହାକୁ ଗ୍ରହଣ କରାଯାଉ, ଏ ସମ୍ୟକ ସୂଚନା ମୁଁ ପାଇଗଲି । ନକ୍ସା ମଞ୍ଜୁର ହେଲା । ଏକ ରେଜିଷ୍ଟ୍ରିକୃତ ସଂସ୍ଥାରୂପେ ପ୍ରତିଷ୍ଠାନ କାର୍ଯ୍ୟ ଆରମ୍ଭ କଲା । ଆଜି ସେହି ସ୍ଥାନରେ ପ୍ରତିଷ୍ଠାନର କାର୍ଯ୍ୟାଳୟ, ପାଠାଗାର, ସମ୍ମିଳନୀକକ୍ଷ ସବୁ ନିର୍ମିତ ହୋଇଛି ଓ ତାହା ଅନୁରୂପ ଅନେକ ଗବେଷଣା ଅନୁଷ୍ଠାନମାନଙ୍କଠାରୁ ବହୁ ଆଗରେ ରହି ଶିକ୍ଷା, ପ୍ରଶିକ୍ଷଣ, ଗବେଷଣା, ପ୍ରକାଶନ ଆଧାରିତ ବହୁମୁଖୀ କାର୍ଯ୍ୟକ୍ରମକୁ ରୂପାୟନ କରିପାରୁଅଛି । ଦୂରଦୃଷ୍ଟି ସମ୍ପନ୍ନ ଗୁଣବାବୁ ଭଲଭାବେ ବୁଝିଥିଲେ ଯେ The smallest actual good is better than the most magnificent promises of impossibilities. ଏପ୍ରିଲ ମାସର ପ୍ରଚଣ୍ଡ ରୌଦ୍ରତାପ ସତ୍ତ୍ୱେ ବଡ଼ଭାଇନାଙ୍କ ଶ୍ରାଦ୍ଧ ସମାରୋହରେ ଯୋଗଦେବା ପାଇଁ ଯେତେବେଳେ ଗୁଣନିଧି ବାବୁ ନିଜେ ଆସି ନିମନ୍ତ୍ରଣ କାର୍ଡ଼ଟିଏ ଧରି ଆମ ଘରେ ପହଞ୍ଚି ଯାଆନ୍ତି, ସେତେବେଳେ ଏ କଥା ସ୍ମରଣ କରି ମୁଁ ଲୋତକ ସମ୍ବରଣ କରିପାରେ ନାହିଁ । କି ସୌଜନ୍ୟ ! କି ମହାନୁଭବତା । ସେ ଥିଲେ ପରମହିତୈଷୀ, ଏକାମ୍ର ଅଧିବାସୀଙ୍କ ମୁରବୀ, ସର୍ବ ବରିଷ୍ଠ ସଚେତନଶୀଳ ନଗରବନ୍ଧୁ । ମୃତ୍ୟୁରେ ମହାନ୍ ସେ ମହାମନାଙ୍କୁ ମୋର ସଶ୍ରଦ୍ଧ ଆଭୂମି ପ୍ରଣାମ ।



# ହେ ପୁଣ୍ୟାତ୍ମା ! ତୁମକୁ କୋଟି ପ୍ରଣାମ

-ଯୋଗୀନାଥ ସାହୁ

ଆପଣଙ୍କ ଭଳି ସ୍ନେହୀ, ଦୟାଳୁ, ସହାନୁଭୂତିଶୀଳ, ସାହାଯ୍ୟକାରୀ, ପରୋପକାରୀ, ଆଦର୍ଶ, ନୀତିବାନ, ଉପଦେଶ ଏବଂ ପରାମର୍ଶ ଦେବାଭଳି ଲୋକ ମୋ ଭାଗ୍ୟରେ କେବେ ମିଳିବେ, ସେ ଆଶା ଭରସା ମୋର ନାହିଁ । ୧୯୮୬ ମସିହା ଠାରୁ ଆଜି ପର୍ଯ୍ୟନ୍ତ ଥିବା ଚଳଣୀ, ସମ୍ପର୍କ ଏବଂ ଅନୁଭୂତିକୁ ବଖାଣି ବସିଲେ ସରିବ ନାହିଁ । ମୁଁ ଆପଣଙ୍କର ପୁଅ ଏବଂ ନାତି ବୟସର ଏବଂ ଅଜାତିର ହେଲେ ମଧ୍ୟ ଯେତେ ସବୁ ସାହାଯ୍ୟ ସହାନୁଭୂତି, ଉପଦେଶ ଏବଂ ପରାମର୍ଶ ଆପଦବିପଦ ସମୟରେ ପାଇଛି ତାହା ମୁଁ ଜୀବନ ଥିବା ପର୍ଯ୍ୟନ୍ତ ଭୁଲି ପାରିବି ନାହିଁ । ପିତା, ପୁତ୍ରକୁ ଯେମିତି ସବୁକ୍ଷେତ୍ରରେ ସାହାଯ୍ୟ କରିଥାଏ, "ବାପ ଥିବା ପୁଅ ଯେମିତି ସଭାରେ ହାରେନି" ଠିକ୍ ସେମିତି ମୋତେ ଆଲୋଚନା ଚକ୍ରରେ ହେଉ ବା କୌଣସି ପରୀକ୍ଷା ନିରୀକ୍ଷା ସମୟରେ ଆପଣ ମୋତେ ଢ଼େର୍ ସାହସ ଦେଇଛନ୍ତି ଏବଂ ଆଗେଇ ଯିବାକୁ ପରାମର୍ଶ ଦେଇଛନ୍ତି । ତାହା ଆଜି ମନେ ପକାଇବା ବେଳେ ଆଖିରୁ ଲୁହର ଧାର ବନ୍ଦ ହୋଇନାହିଁ । ମୁଁ ବାପ ଛେଉଣ୍ଡ ହିସାବରେ କେବେ ଅନୁଭବ କରିନି, କାରଣ ଆପଣଙ୍କର ପରାମର୍ଶ, ନୀତି, ଆଦର୍ଶ ମୋର ବାପା ନଥିବା ସ୍ଥାନ ପୂରଣ କରିଛନ୍ତି । ଆଜି ମୁଁ ବେସହାରା ନିଜକୁ ଅସହାୟ ମନେକରୁଛି ।

ଡିସେମ୍ବର, ଜାନୁୟାରୀ ମାସ ଆସିଲେ ନୂଆ ନୂଆ ଜାଗାକୁ ବୁଲିଯିବା, ମଜା କରିବା ଉତ୍ସବରେ ରହିବା, ବହି ବିକ୍ରି କରିବା ଇତ୍ୟାଦି ଅନେକ କଥା ମନେପଡୁଛି । ସେ ସବୁ ବିଷୟକୁ ତ ବର୍ଣ୍ଣନା କରିହେବ ନାହିଁ । କେବଳ ମନେ ପକାଇ ଆଖିରୁ ଲୁହ ଗଡ଼ାଉଛି । ଯଦି କଦବା କ୍ୱଚିତ୍ ଭୁଲ୍ ହୋଇଯାଏ, ତେବେ ଆପଣ ସେଠାରେ ମହାନୁଭବତାର ପରିଚୟ ଦେଇ ସରଳ ସମାଧାନର ସୂତ୍ର ବାହାର କରନ୍ତି । ମନରେ ରାଗ, ଅହଂକାରକୁ ନରଖି ପରାମର୍ଶ ଦେଇଥାନ୍ତି, କାମକୁ ଆଗେଇ ନେଇ ଥାନ୍ତି ।

ଚଳିତ ବର୍ଷ ଏପ୍ରିଲ ୨୦ ତାରିଖରେ ଅନୁଷ୍ଠାନର ସଭାକାର୍ଯ୍ୟ ପରେ କାହିଁକି କେଜାଣି ଆପଣ ମୋତେ କହିଥିଲେ, "ରୁହ, ଆମେ ପରେ ଖାଇବା "ଏବଂ ସାଙ୍ଗ ହୋଇ ଖାଇଲେ ମଧ୍ୟ ଖାଇବା ଭିତରେ ଆପଣ ମୋତେ ପଚାରିଥିଲେ ଯେ କ'ଣ ମନ ଭଲ ନାହିଁକି ? ସେ ଘର ଗଣ୍ଡଗୋଳ ସମାଧାନ ହେଲା ନାହିଁକି ? ସେ ଲୋକ କ'ଣ ବହୁତ ହଇରାଣ କରୁଛି କି ? ଆଚ୍ଛା ହେଉ, ପରେ ସେ ଲୋକକୁ ଡାକି ସମାଧାନ କରିଦେବା... ଇତ୍ୟାଦି ଇତ୍ୟାଦି ।

ମୁଁ ଏବେ ନିଜକୁ ନିସ୍ୱ ଏବଂ ଅସହାୟ ବୋଧ କରୁଛି । ଶେଷରେ ପ୍ରଭୁ ଲିଙ୍ଗରାଜଙ୍କ ନିକଟରେ କୋଟି ପ୍ରଣାମ କରୁଛି ଯେ ଆପଣଙ୍କର ଅମର ଆତ୍ମାର ସଦ୍‌ଗତି ହେଉ ଏବଂ କେଦାରନାଥ ଗବେଷଣା ପ୍ରତିଷ୍ଠାନ ପ୍ରତି ଆଉ ପାରିରୁ ଆପଣଙ୍କର ଶୁଭ ଦୃଷ୍ଟି ଥାଉ, ଆଜି ପରି ଶହ ଶହ ଶିକ୍ଷାପ୍ରେମୀ ଅନୁଷ୍ଠାନର ସାହାଯ୍ୟ ସହାନୁଭୂତିରେ ଉପକୃତ ହେଉଥାନ୍ତୁ ।

ପ୍ର. ଶିକ୍ଷକ

ବ୍ରହ୍ମେଶ୍ୱର ନୋଡାଲ୍ ଉ.ପ୍ରା. ବିଦ୍ୟାଳୟ

# ଗୁଣନିଧି ଗୁଣ ଅପାର

-ଗୋପାଳ କୃଷ୍ଣ ଶ୍ରୀଚନ୍ଦନ

ବହୁ ସମ୍ମାନିତ ସମ୍ମାନନୀୟ ଗୁଣନିଧି ମହାପାତ୍ରଙ୍କ ଦେହାନ୍ତ ଖବର ପାଇ ମୁଁ ଏତେ ଦୂର ମୂହ୍ୟମାଣ ହୋଇ ପଡିଥିଲି ଯେ ଯେତେବେଳେ କୁହାଗଲା ଏହି ମହାନ୍ ଓଡିଆଙ୍କ ସଂପର୍କରେ କଛି ଲେଖିବାକୁ, ମୁଁ ଦୋଛକିରେ ପଡିଗଲି, କିପରି ଆରମ୍ଭ କରିବି ?

ମୋର ସୌଭାଗ୍ୟ ୨୦୧୧ ମେ ଅଠରରେ ଗୁଣନିଧିବାବୁଙ୍କର ନବେ ବର୍ଷୀୟ ଜୟନ୍ତୀ 'ଆମ ଓଡ଼ିଶା' ତରଫରୁ ପାଳନ କରାଯାଉଥିବା ଶୁଭ ଅବସରରେ କେଦାରନାଥ ଗବେଷଣା ପ୍ରତିଷ୍ଠାନ ତରଫରୁ ମୁଖ୍ୟ ଅତିଥି ଭାବେ ମଞ୍ଚସ୍ଥ ହେବାର ସୁଯୋଗ ମିଳିଥିଲା । ବର୍ଷେ ପୂରିବା ଅବସ୍ଥାରେ ସେ ଦୁର୍ଘଟଣାର ସମ୍ମୁଖୀନ ହୋଇ ଆରପାରିକି ଚାଲିଗଲେ । ଏହି ଜୟନ୍ତୀ ଉତ୍ସବରେ ସଭାପତିତ୍ୱ କରୁଥିବା 'ଆମ ଓଡ଼ିଶା'ର  ଅଧକ୍ଷ ଶ୍ରୀ ସୌମ୍ୟ ରଞ୍ଜନ ପଟ୍ଟନାୟକ ମୋତେ ପନ୍ଦର ମିନିଟ୍ କହିବାକୁ ସମୟ ଦେଇଥିଲେ । ମୁଁ ଗୁଣନିଧି ବାବୁଙ୍କ ସଂପର୍କରେ ୧୪ ମିନିଟ୍ କହିଥିଲି । ମେ ଅଠର ହେଉଛି- 'ଷଢେଇକଳା-ଖରସୁଆଁ ଦିବସ' ଅର୍ଥାତ୍ ୧୯୪୮ ମେ ଅଠରରେ ଖାଣ୍ଟି ଓଡ଼ିଆ ଦେଶୀୟ ରାଜ୍ୟ ଦ୍ୱୟ ଓଡ଼ିଶାରେ ମିଶିବାର ୪ ମାସ ସତର ଦିନ ପରେ ଅସ୍ଥାୟୀ ଭାବେ ବିହାରରେ ମିଶାଇ ଦିଆଗଲା ଯେ, ଦୁଇ ଦୁଇ ଥର ସୁବର୍ଣ୍ଣ ସୁଯୋଗ ଆସିବା ସତ୍ତ୍ୱେ ଝାଡଖଣ୍ଡରେ ରହିଲା ପଛେ, ଓଡ଼ିଶାକୁ ଫେରିଲା ନାହିଁ । ଓଡ଼ିଆଙ୍କ ପାଇଁ ଅତି ସଂବେଦନଶୀଳ ଓ ଗୁରୁତ୍ୱପୂର୍ଣ୍ଣ ତାରିଖରେ ଗୁଣନିଧି ମହାପାତ୍ରଙ୍କର ଜନ୍ମ ବୋଲି ସେ ଜୟନ୍ତୀ ସଭାରେ କହିଥିଲି ।

ମୁଁ ଉତ୍କଳ ସମ୍ମିଳନୀର ସଚିବ ଥାଏ । ଗୁଣନିଧିବାବୁ ଡକ୍ଟର ଭଗବାନ୍ ପଣ୍ଡାଙ୍କ ସହ ମୋ ଘରକୁ ଆସିଥିଲେ । ମୁଁ ଉଭୟଙ୍କୁ ଉତ୍କଳ ସମ୍ମିଳନୀର ଆଜୀବନ ସଦସ୍ୟ କରି ଦେଇଥିଲି । କାରଣ ଏପରି ସ୍ୱାଭିମାନୀ, ନମନୀୟ ମିଷ୍ଟଭାଷୀ ସଦା ହସ ହସ ବ୍ୟକ୍ତି ଉତ୍କଳ ସମ୍ମିଳନୀର ସଦସ୍ୟ ହେଲେ ଏହି ଜାତୀୟ ଅନୁଷ୍ଠାନର ଗୌରବ ବଢ଼ିବ ବୋଲି ସେତେବେଳେ ମୁଁ ଅନୁଭବ କରୁଥିଲି ।

ଗୁଣନିଧିବାବୁ ତାଙ୍କ ବଡ଼ ଭାଇନା ବିଖ୍ୟାତ ଐତିହାସିକ ଓ ଗବେଷକଙ୍କ ନାମରେ ନାମିତ କେଦାରନାଥ ଗବେଷଣା ପ୍ରତିଷ୍ଠାନର ସଭାପତି ଆସନ ଅଳଙ୍କୃତ କରୁଥିବା ପରିପ୍ରେକ୍ଷୀରେ ମୁଁ ଚାରିବର୍ଷ ଉପ-ସଭାପତି ଭାବେ ଦାୟିତ୍ୱ ତୁଲାଇବା ସୌଭାଗ୍ୟ ଅର୍ଜନ କରିଥିଲି ।

୨୦୧୧-୧୨ ଆର୍ଥିକ ବର୍ଷର ସାଧାରଣ ବଜେଟ୍ ଉପସ୍ଥାପନ ଅବସରରେ କେନ୍ଦ୍ର ବିତ୍ତ ମନ୍ତ୍ରୀ ପ୍ରଣବ ମୁଖାର୍ଜି ବରିଷ୍ଠ ନାଗରିକମାନଙ୍କ ପାଇଁ ଆୟକର ରିହାତି ଘୋଷଣା କରୁଥିବା ମୁହୂର୍ତ୍ତରେ ଦୂରଦର୍ଶନ ପରଦାରେ ଗୁଣନିଧି ମହାପାତ୍ରଙ୍କର ରାସ୍ତାରେ ଚାଲୁଥିବା ପ୍ରତିମୂର୍ତ୍ତି ଉଦ୍‌ଭାଷିତ ହୋଇ ଉଠିଲା ! ମୁଁ ସେତେବେଳେ ରୋମାଞ୍ଚିତ ହୋଇ ଅନୁଭବ କଲି, ଗୁଣନିଧିବାବୁ ଓଡ଼ିଶା ପାଇଁ ବରିଷ୍ଠ ନାଗରିକତ୍ୱର ଜୀବନ୍ତ ପ୍ରତୀକ ଓ ପ୍ରତିନିଧି ।

ଗୁଣନିଧିବାବୁ ସବୁବେଳେ ଗାଡ଼ି ପଠାଇ ଆମ କେତେଜଣଙ୍କୁ କେଦାରନାଥ ଗବେଷଣା ପ୍ରତିଷ୍ଠାନର ଆଲୋଚନା ସଭାରେ ଯୋଗଦେବା ପାଇଁ ନେଇଯାନ୍ତି । ବେଳେବେଳେ ନିଜେ ଗାଡ଼ିରେ ଆସି ନିଅନ୍ତି ଓ ପୁଣି ଛାଡ଼ିଯାନ୍ତି । ଥରେ ଖୋଲାଖୋଲି ଭାବେ କହିଲେ - ଡ଼କ୍ଟର ମହେଶ ପ୍ରସାଦ ଦାଶ ଓ ଡ଼କ୍ଟର ଗୋପାଳକୃଷ୍ଣ ଶ୍ରୀଚନ୍ଦନଙ୍କ ପରି ଗବେଷକ ଓ ବୁଦ୍ଧିଜୀବୀ ସଭାରେ ଉପସ୍ଥିତ ନ ରହିଲେ ସଭା ଶୋଭା ପାଇବ ? ତେଣୁ ଗାଡ଼ି ପଠାଉଛି । ଗବେଷକ ଓ ବୁଦ୍ଧିଜୀବୀଙ୍କ ପ୍ରତି କେତେ ମନଖୋଲା ସମ୍ମାନବୋଧ !

ତାଙ୍କ ବିବାହର ଷାଠିଏ ବର୍ଷ ପୂର୍ତ୍ତି ଭୋଜି ସଭାରେ ମୋର ସହପାଠୀ ସ୍ୱର୍ଗତ ଡକ୍ଟର ଆର.ଏନ୍.ଦାଶଙ୍କ ସାଥିରେ ଯାଇ ପେଟପୂରା ଭୋଜି ଖାଇଛି, ଆଉ ସେ ରୋମାଞ୍ଚକର ପରିବେଶକୁ ଅଙ୍ଗେ ଅଙ୍ଗେ ନିଭେଇଛି - ଯାହା ଜୀବନରେ ଭୁଲିବାର ନୁହେଁ ।

ଗୁଣନିଧିବାବୁ ଜଣେ ଆଦର୍ଶ କର୍ମଯୋଗୀ ଥିଲେ । ଯୋଗ୍ୟ ଅଗ୍ରଜଙ୍କର 'ଭରତ-ଲକ୍ଷ୍ମଣ' ତୁଲ୍ୟ ଅନୁଜ ଥିଲେ । ଗବେଷଣା ପ୍ରତିଷ୍ଠାନକୁ ସେ ଶେଷ ନିଃଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ ଜଗି ରହିଥିଲେ । ସେ ଦାୟିତ୍ୱ ଏବେ ତାଙ୍କର ସହକର୍ମୀ ଓ ଉତ୍ତରାଧିକାରୀଙ୍କ ଉପରେ ପଡ଼ିଲା । ଏ ଦୁଃଖଦ ମୁହୂର୍ତ୍ତରେ ଏତିକି । ମାନବ ଲୀଳା ସମ୍ବରଣ କରି ସେଇ ପୁଣ୍ୟ ଜୀବାତ୍ମା ପରମଆତ୍ମାଙ୍କ ସହ ମିଳନ ପଥର ପଥିକ । ମୋର ଭକ୍ତିପୂତ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ନିବେଦନ କରୁଛି ; ଶୋକସନ୍ତପ୍ତ ପରିବାର ତଥା କେଦାରନାଥ ଗବେଷଣା ପ୍ରତିଷ୍ଠାନ ପରିବାରବର୍ଗଙ୍କୁ ଶ୍ରୀଜଗନ୍ନାଥ ଅସୀମ ଧୈର୍ଯ୍ୟ ଓ ଶକ୍ତି ପ୍ରଦାନ କରନ୍ତୁ - ଏତିକି ବିନମ୍ର ପ୍ରାର୍ଥନା । ହରି ଓଁ ତତ୍‌ସତ୍ ।



# ମୁରବୀ

- ଦେବାଶିଷ ମହାପାତ୍ର

ଧର୍ମଶାଳାର ଚଉକି ପଡ଼ିଚି ଖାଲି !
ଝୁରେ ଗବେଷଣା
ଝୁରେ ମହାସଭା
ମୁରବୀ ଯାଇଚି ଚାଲି !!
ଶାଗୁଆ କ୍ୱାଲିସି
ନେଳିଆ ଇଣ୍ଡିକା
ଗଳିମୁଣ୍ଡେ ଆଜି
ଅନେଇଚି ଏକା ।
ହରଚଣ୍ଡୀ ସାହି
ଭିତରୁ ସକାଳୁ
ଧୋବଫରଫର
ବାବୁଙ୍କର ନାହିଁ ଦେଖା !

ମହତାବ ବେଳ
ଶେଷ ଦୀପଶିଖା
ଆଜି ତ ଯାଇଚି ଲିଭି !
ବାବୁ, ବାପା, ନନା,
ଆଜ୍ଞା, ଆଜ୍ଞା ଡ଼ାକ
ଆଉ ନ ପାରିବ ଶୁଭି !!
ନବେଟି ବସନ୍ତ, ନବେଟି ପାହାଚ
ଜୀବନର ପଣାପାଲି !
କେତେ କଥା କେତେ ବ୍ୟଥାର କାହାଣୀ
ମନେ ରହିଥିବ କାଲି !!
ମୁରବୀ ଯାଇଚି ଚାଲି, ମୁରବୀ ଯାଇଚି ଚାଲି !!!

ଅଧ୍ୟାପକ
ଓମର ମୁଖତାର ବିଶ୍ୱବିଦ୍ୟାଳୟ
ତୋବ୍‌ରୁକ, ଲିବ୍ୟା, ଉତ୍ତର ଆଫ୍ରିକା

# ଜଣେ ଦିବଂଗତ କର୍ମଯୋଗୀଙ୍କ ଉଦ୍ଦେଶ୍ୟରେ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି

-ଡ଼କ୍ଟର ସୁରେନ୍ଦ୍ର କୁମାର ମହାରଣା

ଗୁଣନିଧି ମହାପାତ୍ର ସମାଜସେବୀ ଓ ସାହିତ୍ୟ-ସଂସ୍କୃତି କ୍ଷେତ୍ରରେ ଏକ ପରିଚିତ ନାମ । ସେ ଭୁବନେଶ୍ୱର ପୌରପାଳିକାର ପ୍ରଥମ ପୌରପାଳ, କେଦାଂରନାଥ ଗବେଷଣା ପ୍ରତିଷ୍ଠାନର ଅନ୍ୟତମ ପ୍ରତିଷ୍ଠାତା । ଗତ କେତେବର୍ଷଧରି ସେ କେଦାରନାଥ ଗବେଷଣା ପ୍ରତିଷ୍ଠାନ ସଭାପତି ରହି ଆସିଥିଲେ । ସଭାପତି ଭାବରେ ତାଙ୍କ କାର୍ଯ୍ୟକାଳରେ ପ୍ରତିଷ୍ଠାନର ବହୁବିଧ ଉନ୍ନତି ସାଧିତ ହୋଇଥିବାରୁ, ମୋ ମତରେ, ଏହା ପ୍ରତିଷ୍ଠାନ ପାଇଁ ଥିଲା ଏକ ସୁବର୍ଣ୍ଣ ଯୁଗ ।

ତାଙ୍କ ସହିତ ମୋର ସାକ୍ଷାତ ଓ ପରିଚୟ ବହୁ ପୁରୁଣା । ସେତେବେଳେ ଗବେଷଣା ପ୍ରତିଷ୍ଠାନର ସମସ୍ତ ପ୍ରତିଷ୍ଠାତା ସଦସ୍ୟ ଜୀବିତ ଥାନ୍ତି । ଓଡ଼ିଶା ସରକାରଙ୍କ ପୂର୍ବତନ ଅତିରିକ୍ତ ଶାସନ ରଚିତ ସ୍ୱର୍ଗତ ବିମଳକିଶୋର ମିଶ୍ରଙ୍କ ସଭାପତିତ୍ୱରେ ପ୍ରତିମାସରେ ଗବେଷଣା ପ୍ରତିଷ୍ଠାନର ଏକ ଆଲୋଚନା ଚକ୍ର ଅନୁଷ୍ଠିତ ହେଉଥିଲା । ପ୍ରତି ଆଲୋଚନ ଚକ୍ରରେ ଯୋଗଦେବାକୁ ମୁଁ ଭୁଲୁ ନଥିଲି । ଗୁଣବାବୁଙ୍କ ସହିତ ମୋର ପରିଚୟ ସେହି ସମୟରୁ ।

ଗୁଣବାବୁ ବ୍ୟକ୍ତିଗତ ଜୀବନର ଅତି ଅମାୟିକ, ବନ୍ଧୁବତ୍ସଳ ଓ ବିଦ୍ୟୋତ୍ସାହୀ । ୯୦ ବର୍ଷ ବୟସରେ ପଦାର୍ପଣ କରି ମଧ ସେ ଥିଲେ କର୍ମଚଞ୍ଚଳ । ସେ ଥିଲେ ଜଣେ ନିରଳସ କର୍ମଯୋଗୀ, ମହତ୍‌କର୍ମ ଥିଲା ତାଙ୍କ ଉପାସନା । ସମାଜସେବା ସହିତ ବହୁ ଅନୁଷ୍ଠାନ ସହିତ ତାଙ୍କର ସକ୍ରିୟ ସଂପୃକ୍ତି ଥିଲା । ସେ ଜଣେ ବ୍ୟକ୍ତି ନଥିଲେ, ଥିଲେ ଏକ ଅନୁଷ୍ଠାନ । ଗବେଷଣା ପ୍ରତିଷ୍ଠାନକୁ କାର୍ଯ୍ୟକ୍ଷମ ରଖିବା ପାଇଁ ସେ ଆପ୍ରାଣ ଉଦ୍ୟମ କରିଥିଲେ । ସେ ଥିଲେ ଆମ ଭିତରେ ବୟୋଜ୍ୟେଷ୍ଠ, ଆମର ମୁରବି, ଆମର ଆଦର୍ଶ, ତାଙ୍କର ଅବର୍ତ୍ତମାନରେ ଆମେ ଜଣେ ମୁରବିଙ୍କୁ ହରାଇଲୁ ।

ମାତ୍ର ଅଳ୍ପଦିନର ଅସୁସ୍ଥତା ଆମକୁ ଶୋକ ସାଗରରେ ଭସାଇଦେଇ ତାଙ୍କୁ ଆରପାରିକୁ ନେଇଗଲା । ତାଙ୍କ ଅବର୍ତ୍ତମାନତା ସାମାଜିକ ଓ ସାଂସ୍କୃତିକ ଜଗତପାଇଁ ଏକ ଅପୂରଣୀୟ କ୍ଷତି ଏବଂ ତାଙ୍କ ପରିବାର ଓ ଆମପାଇଁ ଏକ ଅଶ୍ରୁଳ ଶୂନ୍ୟତା । ଈଶ୍ୱର କରନ୍ତୁ, ତାଙ୍କ ଅମର ଆତ୍ମା ସଦ୍‌ଗତି ଲାଭକରୁ ଓ ସେ ଦିବ୍ୟଧାମରୁ ଆମ ପାଇଁ ପ୍ରେରଣାର ଉତ୍ସ ହୋଇ ରହିଥାନ୍ତୁ । ସେହି ମହାନ୍ ଆତ୍ମାଙ୍କ ଉଦ୍ଦେଶ୍ୟରେ ମୋର ଭକ୍ତିପୂତ ପ୍ରଣାମ ।

ଏନ୍-୫/୩୭୪, ଆଇ.ଆର.ସି..ଭିଲେଜ,

ଭୁବନେଶ୍ୱର-୧୫

# ଆଶା, ଆଶାରେ ହିଁ ରହିଗଲା

ଡଃ ସୁଚେତା ରାଉତ

କେହି ରହିନାହିଁ ରହିବେ ନାହିଁଟି
ଭବ ରଙ୍ଗ ଭୂମି ତଳେ
ସର୍ବେ ନିଜ ନିଜ ଅଭିନୟ ସାରି
ବାହୁଡ଼ିବେ କାଳବଳେ । (ରାଧାନାଥ)

ଜନ୍ମ ହେଲେ ମୃତ୍ୟୁ ନିଶ୍ଚିତ । ଏକଥା ସମସ୍ତେ ଜାଣି ମଧ୍ୟ ବିଶ୍ୱାସ କରି ପାରନ୍ତିନି । ତାଙ୍କ ଭିତରେ ବସଉଠ କରୁଥିବା, ସୁଖଦୁଃଖରେ ଭାଗୀଦାର ହେଉଥିବା ମଣିଷଟି ଆଉ ନାହିଁ । ଯେମିତିକି ଗୁଣ ମଉସା (ଂ ଗୁଣନିଧି ମହାପାତ୍ର, କେଦାରନାଥ ଗବେଷଣା ପ୍ରତିଷ୍ଠାନର ସଭାପତି) ମେ ୨୪ ତାରିଖରୁ ଆମ ଗହଣରେ ନାହାଁନ୍ତି; କିନ୍ତୁ ମତେ ଲାଗୁଛି ସେ ଡାକ୍ତରଖାନାରେ ଅଛନ୍ତି, କେଦାରନାଥ ଗବେଷଣା ପ୍ରତିଷ୍ଠାନରେ ହେଉଥିବା ସଭାରେ ପୁଣି ଯୋଗଦେବେ ।

ଂ ଗୁଣନିଧି ମହାପାତ୍ରଙ୍କ ନାମ ବହୁତ ଦିନରୁ (ମ୍ୟୁନିସିପାଲଟି ଚେୟାରମ୍ୟାନ୍ ହେବା ପରଠୁ) ଶୁଣିଥିଲେ ମଧ୍ୟ ତାଙ୍କ ସହିତ ପରିଚୟ ୧୫ ବର୍ଷ ତଳେ ହେଇଥିଲା । ଆମେ ଏକାମ୍ର ସେବା ସଂଘ ନାମରେ ଗୋଟିଏ ସଂସ୍ଥା ଗଢ଼ିଥିଲୁ, ସେଥିରେ ଗୁଣ ମଉସା ସଭାପତି, ଜୟନ୍ତ ପଟ୍ଟନାୟକ ସଂପାଦକ, ସମାଜସେବୀ ନୀଳମଣି ମିଶ୍ର, ଲିଙ୍ଗରାଜ ସାହୁ ଏବଂ ଅନ୍ୟ କେତେକ ସଦସ୍ୟଙ୍କ ସହିତ ମୁଁ ମଧ୍ୟ ଜଡ଼ିତ ଥିଲି । ସେତେବେଳେ ଆମେ ତାଙ୍କ ନେତୃତ୍ୱରେ ବହୁତ କାମ କରିଛୁ । ଲିଙ୍ଗରାଜ ମନ୍ଦିର, ଡାକ୍ତରଖାନା, ମନ୍ଦିର ପାଖର ରାସ୍ତା ସବୁ ଝାଡୁ ଓ ଟୋକେଇ ଧରି ସଫାକରିଛୁ । ଏହାଛଡ଼ା ଅଶୋକାଷ୍ଟମୀ ରେ ଜଳଛତ୍ର ଖୋଲୁଥିଲୁ । ସଂପାଦକଙ୍କ କାର୍ଯ୍ୟବ୍ୟସ୍ତତାଜନିତ ଅନୁପସ୍ଥିତି ଯୋଗୁଁ ଏ ସବୁ କାମ ଧିରେ ଧିରେ ବନ୍ଦ ହୋଇଗଲା ।

୨୦୦୫ରେ ଗୁଣ ମଉସା ଆମ ଘରକୁ ଆସିଥିଲେ । ମତେ କେଦାରନାଥ ଗବେଷଣା ପ୍ରତିଷ୍ଠାନରେ ଆଜୀବନ ସଦସ୍ୟ ହେବାପାଇଁ କହିଥିଲେ । ସଦସ୍ୟ ହେବାପରେ ମୁଁ ଅନୁଭବ କରିଛି ଅନ୍ୟ ଅନୁଷ୍ଠାନ ଅପେକ୍ଷା ଏହାର ସ୍ୱତନ୍ତ୍ରତା । ଏଠାରେ ପାରିବାରିକ ଆଲୋଚନା ଭଳି ଆଲୋଚନା ହୋଇଥାଏ । ପ୍ରାୟ ସମସ୍ତ ସଦସ୍ୟ ନିଜ ନିଜ ମତ ବ୍ୟକ୍ତ କରିଥାଆନ୍ତି । ଗୁଣ ମଉସା ସଭାପତି ହୋଇଥିଲେ ମଧ୍ୟ ଅନ୍ୟର ମତକୁ ଗୁରୁତ୍ୱ ଦେଇଥାଆନ୍ତି ।

ଂ ଗୁଣନିଧି ମହାପାତ୍ରଙ୍କର ଯେଉଁ ଦିନ ୬୦ ତମ ବିବାହ ବାର୍ଷିକୀ ପାଳନ ହୋଇଥିଲା,ସେଦିନ ସକାଳେ ମତେ ଫୋନ୍ କରି ନିମନ୍ତ୍ରଣ କରିଥିଲେ । କିନ୍ତୁ କାରଣଟା ଜଣେଇ ନଥିଲେ । ସେଠାରେ ପହଁଞ୍ଚି ମୁଁ ଆଶ୍ଚର୍ଯ୍ୟ ହୋଇ ଯାଇଥିଲି । ପୁଷ୍ପଗୁଚ୍ଛ ଦେବା ଅବସରରେ ମୁଁ ତାଙ୍କୁ ଏ ବିଷୟରେ ପଚାରିଥିଲି । ସେ ହସି ହସି କହିଥିଲେ, "ପିଲାମାନେ ଏ ସବୁ ବ୍ୟବସ୍ଥା କରିଛନ୍ତି ।" ସେଦିନ ପ୍ରତ୍ୟେକଙ୍କ ଖାଇବା ବିଷୟରେ ସେ ପଚାରି ବୁଝୁଥିଲେ । ସେଦିନ କେବଳ ନୁହେଁ ପ୍ରତ୍ୟେକ ନୂଆବର୍ଷ ଅବସରରେ ବିଭିନ୍ନ ମନ୍ଦିରରେ ସେ ଭୋଜି ଦେଇ ଥାଆନ୍ତି । ସବୁଠି ସେ ସମସ୍ତଙ୍କର କଥା ବୁଝିଥାଆନ୍ତି । ଅର୍ଥ, ଯଶ, ସମ୍ମାନ, ପ୍ରତିପତି ସବୁଥାଇ ମଧ୍ୟ ଅହଙ୍କାର ତାଙ୍କୁ ସ୍ପର୍ଶ କରିନଥିଲା । ବିନୟୀ ମିଷ୍ଟଭାଷୀ ମଣିଷ ଭାବରେ ସେ ସମସ୍ତଙ୍କ ନିକଟରେ ନିଜର ସ୍ୱତନ୍ତ୍ର ପରିଚୟ ଗଢ଼ି ପାରିଥିଲେ ।

୨୦୧୨ ଏପ୍ରିଲ୍ ୧୨ ତାରିଖ ଦିନ କେଦାରନାଥ ଗବେଷଣା ପ୍ରତିଷ୍ଠାନରେ ଂ ପଣ୍ଡିତ ନୀଳମଣି ମିଶ୍ରଙ୍କ ଜୟନ୍ତୀ ପାଳନ ଅବସରରେ ପ୍ରସାଦ ସେବନର ବ୍ୟବସ୍ଥା ହୋଇଥିଲା । ସେଦିନ ଆମେ କେତେଜଣ ଆଣ୍ଠୁଗଣ୍ଠିଗତ ସମସ୍ୟା ସକାଶେ ଚେୟାର୍ ଉପରେ ବସି ପ୍ରସାଦସେବନ କଲାବେଳେ ମଉସା ଆମ ସମ୍ମୁଖରେ ତଳେ ବସି ଭୋଜନ କରୁଥିଲେ । ସେଦିନ ତାଙ୍କୁ ଦେଖି ମୁଁ ଭାବିଥିଲି ୯୦ ବର୍ଷ ବୟସରେ ସେ ଯେପରି ଚଳଚଞ୍ଚଳ ଅଛନ୍ତି, ତାଙ୍କର ଜୀବିତାବସ୍ଥାରେ ଆମେ ଜନ୍ମ ଶତବାର୍ଷିକୀ ପାଳନ କରିବୁ । କିନ୍ତୁ ମୋ ଆଶା ଆଶାରେ ହିଁ ରହିଗଲା । ମାତ୍ର ମାସକ ପରେ ସେ ଆମଠୁ ଚିର ବିଦାୟ ନେଲେ । ମୋ ନମସ୍ୟ ଗୁଣନିଧି ମହାପାତ୍ର (ମଉସା)ଙ୍କ ଅମର ଆତ୍ମାର ସଦ୍‌ଗତି କାମନା କରିବା ସହିତ ତାଙ୍କ ପରିବାର ବର୍ଗଙ୍କୁ (ବିୟୋଗ ଜନିତ ଦୁଃଖ ଲାଘବ ପାଇଁ) ଶକ୍ତି ଦିଅନ୍ତୁ ବୋଲି ମୋର ଶ୍ରୀ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା ।

କାର୍ଯ୍ୟକାରୀ ସଦସ୍ୟା
କେଦାରନାଥ ଗବେଷଣା ପ୍ରତିଷ୍ଠାନ

# କୀର୍ତ୍ତିଯସ୍ୟ ସଃ ଜୀବତି

**-ଅଧ୍ୟାପକ ରାଜକିଶୋର ମିଶ୍ର**

ଆପୋଲୋ ହସ୍ପିଟାଲ୍‌ର ଆଇସିୟୁରେ ସେଦିନ ପ୍ରାୟ ସାଢ଼େ ଏଗାରଟା ବେଳେ ଆପଣଙ୍କୁ ଦେଖା କରିଥିଲି । ପୂର୍ବରୁ କେତେଥର ଫୋନ୍‌ରେ କଥା ବି ହୋଇଥିଲି । ସେଦିନ କିନ୍ତୁ ଆପଣଙ୍କୁ ନିଆରା ରୂପରେ ମୁଁ ଦେଖିଲି । ପ୍ରଶାନ୍ତି ପ୍ରସନ୍ନତାର ପରିବ୍ୟାପ୍ତ ଶରୀରରେ ସ୍ମିତ ହସର ଲହଡ଼ି ଆପଣଙ୍କର ଖୋଜିଲା ଲୋଡ଼ିଲା ଆଖି ମୋ ଦେହକୁ ପହଁରେଇ ନେଲା । କହିଲେ- "ସମୁଦି, ମୁଁ ତମକୁ ଖାଲି ଅପେକ୍ଷା କରିଛି...." । ମୁଁ ଲଜ୍ଜିତ ହେଲି । କହିଲି- 'ଆଉ କେଇଟା ଦିନରେ ଆପଣ ସୁସ୍ଥ ହୋଇ ଘରକୁ ଆସିବେନି ? ସେ ପୁଣି ନିର୍ବାକ୍ ହସଟିଏ ଖେଳେଇ ଦେଇ କହିଲେ, "ଭାଇନାଙ୍କ ପରେ ପ୍ରାୟ ୩୦ ବର୍ଷ କାଳ ପରିଶ୍ରମ କରି ଅନୁଷ୍ଠାନଟିକୁ ଠିଆ କରାଇଛି । ଏ ଯେମିତି ଆଉ କିଛିଦିନ ବଞ୍ଚିରହେ ।" ତାଙ୍କ ମନରେ ଗୁଡ଼େଇ ତୁଡ଼େଇ ହେଉଥିବା ଜଣେ ସମ୍ଭାବ୍ୟ ଉତ୍ତରାଧିକାରୀଙ୍କ ନାଁ ମୋତେ କହିପକେଇ ସତୃପ୍ତ ନୟନରେ ମୋ' ପ୍ରତିକ୍ରିୟା ଜାଣିବାକୁ ଚାହିଁଲେ । ସେ ଚାହାଣିରେ ଏକ ଶିଶୁସୁଲଭ ସ୍ନିଗ୍ଧତା ଲେସି ହୋଇଥିଲା ।

କେଦାରନାଥ ଗବେଷଣା ପ୍ରତିଷ୍ଠାନର ଜଣେ ଆଜୀବନ ସଭ୍ୟ ଭାବରେ ବହୁ ବୈଠକରେ ମୁଁ ତାଙ୍କର ସଭାପତି ଅଭିଭାଷଣ ଶୁଣିଛି । ସବୁବେଳେ ସେ ନିଜର କର୍ତ୍ତୃତ୍ୱ ଜାହିର ନ କରି ବହୁମତକୁ ସ୍ୱୀକୃତି ଦେବାରେ ଆଗଭର ହୋଇଛନ୍ତି । ନିଜକୁ କେବଳ ଜଣେ କର୍ମୀ ଓ ମାଧ୍ୟମ ଭାବରେ ପରିଚୟ ଦେବାକୁ ଭଲ ପାଆନ୍ତି । ଦୁଃଖରେ ଭାଙ୍ଗି ପଡ଼ନ୍ତି ନାହିଁ କି ସୁଖ ସମ୍ପଦରେ ମତୁଆଲା ହୁଅନ୍ତି ନାହିଁ । ମାପିଚୁପି କହନ୍ତି । ଜୀବନସାରା କାହା ମନରେ ସେ ଆଘାତ ଦେଇଥିବା କଥା ଅନ୍ତତଃ ମୁଁ ଜାଣିନି ।

୧୯୭୦ ମସିହାରେ ବିଜେବି କଲେଜକୁ ବଦଳିହୋଇ ଆସିବା ପରଠାରୁ ମୁଁ ତାଙ୍କ ସହିତ ପରିଚିତ । କେଦାରନାଥ ବାବୁଙ୍କ ଅନୁଜ ହିସାବରେ ସେ ମୋର ସବୁବେଳେ ନମସ୍ୟ । ପରେ ପ୍ରାୟ ୨୫ ବର୍ଷ ପରେ ସେ ମୋର ସମୁଦିଙ୍କର ସମୁଦି ଭାବରେ ଆମ ପରିବାର ସହ ଅଧିକ ନିକଟତର ହେଲେ ।

ଏକ୍ରାମ କ୍ଷେତ୍ରରେ ପାରିପାର୍ଶ୍ୱିକ ତଥା ଆଧାତ୍ମିକ ଚିନ୍ତନର ବିକାଶରେ ତାଙ୍କର ସାଂଗଠିନିକ ଭୂମିକାକୁ ଯେ କେହି ପ୍ରଶଂସା ନ କରି ରହିପାରିବେ ନାହିଁ । ୧୯୩୫ ମସିହାରେ କେଦାରବାବୁଙ୍କ ସଂରଚିତ 'ଭୁବନେଶ୍ୱର ଇତିହାସ'ର ପାଣ୍ଡୁଲିପିର ପ୍ରକାଶନ ତଥା କେଦାରବାବୁଙ୍କ ବିବିଧ ପ୍ରବନ୍ଧ ଓ ପ୍ରତ୍ନତାତ୍ତ୍ୱିକ ଗବେଷଣାର ପ୍ରକାଶନ ଏବଂ ଏବେ ଦୁଷ୍ପ୍ରାପ୍ୟ ହୋଇଯାଇ ଥିବା ପ୍ରକାଶିତ ପୁସ୍ତକର ପୁନଃ ପ୍ରକାଶନ ପାଇଁ ସେ ବ୍ୟାକୁଳ ଥିଲେ । 'ଆଚର୍ଯ୍ୟ ପ୍ରଭବୋ ଧର୍ମ'- ଗୀତୋକ୍ତ ଏହି ବାଣୀକୁ ସେ ନିଜର ଆଚରଣ ଓ ଉଚ୍ଚାରଣରେ ମାର୍ଗଦର୍ଶିକା ଭାବରେ ଗ୍ରହଣ କରି ନେଇଥିଲେ ।

ଜୀବନର ଅନ୍ତିମ ସପ୍ତାହରେ ସେ ସକଳ ମାୟା ତ୍ୟାଗ କରି ବହିର୍ଜଗତକୁ ଯିବାପାଇଁ ପ୍ରସ୍ତୁତି ଆରମ୍ଭ କରିଦେଇଥିଲେ । ଶ୍ରୀ ଲିଙ୍ଗରାଜଙ୍କର ଆଜ୍ଞାମାଳ ବହନ କରିଥିବା ଅଦୃଶ୍ୟ ଅପାର୍ଥିବ ଶିଢ଼ିଟି ବୋଧେ ତାଙ୍କ ପ୍ରତୀକ୍ଷାରେ ନଇଁ ଆସୁଥିଲା । ମେ' ମାସ ୨୪ ତାରିଖ ଜ୍ୟେଷ୍ଠ ଶୁକ୍ଳ ତୃତୀୟା ତିଥି ଗୁରୁବାର ମଧ୍ୟାହ୍ନର ଅବ୍ୟବହିତ ପୂର୍ବରୁ ସେ ସମସ୍ତଙ୍କଠାରୁ ଅନ୍ତିମ ବିଦାୟ ନେଇ ସେହି ଦିବ୍ୟ ଶିଢ଼ିରେ ପାଦ ଥାପିଲେ । ଏ ସଂସାରରେ ନବେ ବର୍ଷ ଛ'ଦିନ ଥିଲା ତାଙ୍କର ରହଣି । ଲିଙ୍ଗରାଜ ମହାପ୍ରଭୁଙ୍କର ରାଜ ବୈଦ୍ୟବଂଶର ସର୍ବକନିଷ୍ଠ ସନ୍ତାନ ଭାବରେ ଭୂମିଷ୍ଠ ହୋଇ ଏକ୍ରାମ କ୍ଷେତ୍ରର ସକଳ ଉନ୍ନତିରେ ନିଜକୁ ନିୟୋଜିତ କରି ଜଣେ କର୍ମଯୋଗୀ ଭାବରେ ଓ ଜନସମାଜର ଅଭିଭାବକ ଭାବରେ ସେ ଆମମାନଙ୍କ ସ୍ମୃତିରେ ଦାଉଦାଉ ହୋଇ ଉଚ୍ଛୁଳି ଉଠିବେ ନିଶ୍ଚୟ । ତାଙ୍କ ଶୋକସନ୍ତପ୍ତ ପରିବାର ଜ୍ଞାତିକୁଟୁମ୍ବ, ବନ୍ଧୁ ପରିଜନ ଓ ହିତୈଷୀ ବ୍ୟକ୍ତିଗଣ ନିଶ୍ଚିତ ଭାବରେ ତାଙ୍କର ଦିବ୍ୟସତ୍ତାକୁ ବିଭିନ୍ନ ସମୟରେ ନିଜର ଅନୁଭବରେ ଆଣିପାରିବେ ବୋଲି ମୋର ଦୃଢ଼ ବିଶ୍ୱାସ ରହିଛି । ଯଶ ଓ କୀର୍ତ୍ତିକୁ ଶିରୋଭୂଷଣ କରିଥିବା ବ୍ୟକ୍ତି ଚିର ଅମର ହୋଇ ରହେ ।

ପୂର୍ବତନ ସଚିବ, ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର

# ଗୁଣନିଧି ମହାପାତ୍ରଙ୍କ ସ୍ମରଣେ



**-ଡକ୍ଟର ବିମଳେନ୍ଦୁ ମହାନ୍ତି**

ଗତ ମେ' ୨୪ ତାରିଖ ସନ୍ଧ୍ୟାବେଳେ ଜଣେ ବନ୍ଧୁ ଖବର ଦେଲେ ଯେ ଗୁଣନିଧି ମହାପାତ୍ରଙ୍କର ବିୟୋଗ ହୋଇଯାଇଛି । ମାସେ ପୂର୍ବରୁ ତାଙ୍କର ସାଙ୍ଗରେ ମୋର ସାକ୍ଷାତ ହୋଇଥିଲା ଏବଂ ସେ ସମ୍ପୂର୍ଣ୍ଣ ସୁସ୍ଥ ଥିଲେ । ଏ ସମ୍ବାଦ ଶୁଣି କବିଙ୍କର ଗୋଟିଏ ଉକ୍ତି ମୋର ମନେପଡ଼ିଗଲା ।

" ବଡ଼ କ୍ରୂରକାଳ ବଡ଼ ଅବିଶ୍ୱାସୀ,
ହାବୁଡ଼ି ଯିବ ସେ ଅକସ୍ମାତେ ଆସି"

କିଛି ସମୟ ସ୍ତବ୍ଧ ହୋଇ ବସିଗଲି । ପୁରୁଣା ସ୍ମୃତିରୁ ମୋର ଭୁବନେଶ୍ୱରରେ ରହିବା ଓ ତାଙ୍କ ସାଙ୍ଗରେ ପ୍ରଥମ ଦେଖା ଏବଂ ଋରି ଦଶନ୍ଧିରୁ ଉର୍ଦ୍ଧ୍ୱ ସମୟ ଧରି ତାଙ୍କ ସହିତ ବିଭିନ୍ନ ସମୟରେ ସମ୍ପର୍କ ସବୁ ମନେପଡ଼ିଗଲା ।

୧୯୬୮ ମସିହା ଜାନୁୟାରୀ ମାସ ୧୦ ତାରିଖରେ କୃଷି ବିଶ୍ୱବିଦ୍ୟାଳୟର ଛାତ୍ର କଲ୍ୟାଣ ବିଭାଗର ଡିନ୍ ଭାବରେ ମୁଁ ଯୋଗ ଦେଇଥିଲି । ତା'ର କିଛିଦିନ ପରେ ଓଡ଼ିଶା ସରକାରଙ୍କ କୃଷି ବିଭାଗର ତତ୍କାଳୀନ ନିର୍ଦ୍ଦେଶକ ଡକ୍ଟର ଉଦୟନାଥ ମହାନ୍ତିଙ୍କ ଘରକୁ ଯାଇଥିଲି ତାଙ୍କୁ ଦେଖା କରିବାକୁ । ସଂଯୋଗବଶତଃ ସେଠାରେ ଉପସ୍ଥିତ ଥିଲେ ଗୁଣନିଧି ମହାପାତ୍ର । ଡକ୍ଟର ମହାନ୍ତି ମୋତେ ତାଙ୍କ ସହିତ ପରିଚୟ କରାଇଦେଇ କହିଥିଲେ, କୃଷି ବିଭାଗରେ ଗୁଣବାବୁଙ୍କ ଭଳି ନିଷ୍ପାପର, ସଚ୍ଚୋଟ, ନିର୍ଭୀକ, କଠିନ ପରିଶ୍ରମୀ ଓ ପରୋପକାରୀ ବ୍ୟକ୍ତି ବିରଳ । କିନ୍ତୁ ସେ ବ୍ୟକ୍ତିଗତ ଅସୁବିଧା କାରଣରୁ ଦୁଇବର୍ଷ ପୂର୍ବରୁ ସ୍ୱେଚ୍ଛାକୃତ ଅବସର ଗ୍ରହଣ କରିଛନ୍ତି । ସେ ପୁରୁଣା ଭୁବନେଶ୍ୱରର ଅଧିବାସୀ ଓ ଲିଙ୍ଗରାଜଙ୍କ ପରମ ଭକ୍ତ । ଗୁଣବାବୁଙ୍କର ହସ ହସ ମୁହଁ ଓ ଦୁଇପଦ ମିଠାକଥା ମୋତେ ଖୁବ୍ ଭଲ ଲାଗିଥିଲା । ମନେ ମନେ ଭାବିଲି କେତେ ସ୍ନେହୀ ଓ ସରଳ ବ୍ୟକ୍ତି ଗୁଣବାବୁ । ପରେ ଗୁଣବାବୁଙ୍କୁ ସହିତ ମୋର ଅନେକବାର ବିଶ୍ୱବିଦ୍ୟାଳୟରେ ଓ ଭୁବନେଶ୍ୱରର ବିଭିନ୍ନ ଅନୁଷ୍ଠାନରେ ଦେଖାହୋଇଛି । ବିଶ୍ୱବିଦ୍ୟାଳୟର ବହୁ ଅଫିସର ଓ କର୍ମଚାରୀ ଗୁଣବାବୁଙ୍କୁ ଚିହ୍ନିଥିଲେ ଓ ତାଙ୍କ ବିଷୟରେ ଜାଣିଥିଲେ । ସେମାନେ କୁହନ୍ତି ଯେ ତାଙ୍କ ଭଳି କର୍ମଠ ବ୍ୟକ୍ତି ଆମ ରାଜ୍ୟରେ କ୍ୱଚିତ୍ ଅଛନ୍ତି । ଗୁଣବାବୁ କୃଷି ଫାର୍ମମାନଙ୍କର ଦାୟିତ୍ୱରେ ଥିବାବେଳେ ଫାର୍ମଗୁଡ଼ିକର ଆୟ ଅନେକ ବୃଦ୍ଧି ଘଟିଥିଲା । ସେ ଫାର୍ମର ଆଖପାଖ ଗ୍ରାମଗୁଡ଼ିକର ଚାଷୀମାନଙ୍କୁ ସ୍ୱତଃପ୍ରବୃତ୍ତ ଭାବରେ ସାହାଯ୍ୟ କରିବାକୁ ଚେଷ୍ଟା କରୁଥିଲେ । ତାଙ୍କ ସହକର୍ମୀମାନେ କୁହନ୍ତି, ନୂତନ ପ୍ରଣାଳୀରେ ଧାନ ଚାଷ କରିବାକୁ ସେ ଚାଷୀମାନଙ୍କୁ ନିଜେ ବିଲରେ ଠିଆ ହୋଇ ଶିଖାଉଥିଲେ । ଉପରଠାଉରିଆ କାର୍ଯ୍ୟ କରିବାରେ ସେ ବିଶ୍ୱାସ କରୁନଥିଲେ । ଚାଷୀମାନଙ୍କୁ କେବଳ ସହାନୁଭୂତି ପ୍ରକାଶ କରି ସେ ନିଜର କର୍ତ୍ତବ୍ୟ ସମାପନ ହେଲା ବୋଲି କେବେ ବି ଚିନ୍ତା କରୁନଥିଲେ । ଚାଷୀମାନେ ତାଙ୍କ ସାଙ୍ଗରେ ପଦେ ଦି' ପଦ କଥାବର୍ତ୍ତା ହେଲେ ସେ ତାଙ୍କୁ ନିଜର କରିଦେଇ ପାରୁଥିଲେ । ଚାଷୀଭାଇମାନଙ୍କୁ ସାର ବ୍ୟବହାର କରିବାପାଇଁ ସେ ଉତ୍ସାହିତ କରୁଥିଲେ ଏବଂ ସାର ବ୍ୟବହାର ଦ୍ୱାରା ଅଧିକ ଶସ୍ୟ କିଭଳି ଉତ୍ପାଦନ ହୋଇପାରିବ ତାହା ସେ ଋଷୀମାନଙ୍କୁ ବୁଝାଇ ତାଙ୍କ ମନରେ ସାର ବ୍ୟବହାର ପ୍ରତି ଆଗ୍ରହ ସୃଷ୍ଟି କରିପାରୁଥିଲେ । ଅସଲ କଥାଟି ହେଉଛି ତାଙ୍କ ଉପରେ ଲୋକେ ବିଶ୍ୱାସ ସ୍ଥାପନ କରିପାରୁଥିଲେ, ତେଣୁ ସେ ଯାହା କହୁଥିଲେ ତାକୁ ମାନିନେଉଥିଲେ ।

ଗୁଣନିଧିବାବୁ ଋକିରିରୁ ସ୍ୱେଚ୍ଛାକୃତ ଅବସର ଗ୍ରହଣ କରି ଭୁବନେଶ୍ୱରବାସୀଙ୍କ ସେବାରେ ନିଜକୁ ନିୟୋଜିତ କରିଥିଲେ । ୧୯୭୩ ରୁ ୧୯୭୬ ମସିହା ଯାଏ ସେ ଭୁବନେଶ୍ୱର ବିଜ୍ଞାପିତ ଅଞ୍ଚଳ ପରିଷଦର ଉପାଧକ୍ଷ ଥିଲେ । ପରେ ୧୯୭୬ ରୁ ୧୯୭୯ ଯାଏ ଭୁବନେଶ୍ୱର ନଗରପାଳ ଭାବେ ଦାୟିତ୍ୱ ତୁଲାଇଥିଲେ । ଭୁବନେଶ୍ୱରର ବହୁ ଅନୁଷ୍ଠାନର ସେ ଉପଦେଷ୍ଟା ଓ ସଭାପତି ହୋଇ ଦିଗ୍‌ଦର୍ଶନ ଦେଇଥିଲେ । ସେ ଭୁବନେଶ୍ୱରବାସୀଙ୍କର ଥିଲେ ଜଣେ

ମୁରବୀ ଓ ବରିଷ୍ଠ ସଂଗଠକ । ସେ ଭୁବନେଶ୍ୱରରେ ଏକାମ୍ର କଲେଜ ପ୍ରତିଷ୍ଠା କରିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ଏହି କଲେଜଟି ପ୍ରଥମେ ପୁରୁଣା ଭୁବନେଶ୍ୱରର ବି. ଏମ୍. ହାଇସ୍କୁଲ ପ୍ରାଙ୍ଗଣରେ ଆରମ୍ଭ ହୋଇଥିଲା ଏବଂ ତାଙ୍କ ଅନୁରୋଧ ରକ୍ଷାକରି ବିଶିଷ୍ଟ ଶିକ୍ଷାବିତ୍ ପ୍ରଫେସର ଶତ୍ରୁଘ୍ନ ନାଥ ଏହି କଲେଜର ଅଧ୍ୟକ୍ଷ ଦାୟିତ୍ୱ ଗ୍ରହଣ କରିଥିଲେ । ବର୍ତ୍ତମାନ ଏହି କଲେଜରେ ପାଖାପାଖି ତିନି ହଜାର ଛାତ୍ରଛାତ୍ରୀ ପାଠ ପଢୁଛନ୍ତି ।

ଗୁଣନିଧିବାବୁ ଇଣ୍ଡିଆନ ନ୍ୟାସନାଲ୍ ଟ୍ରଷ୍ଟ ଫର ଆର୍ଟ ଆଣ୍ଡ କଲଚରାଲ ହେରିଟେଜ୍ (ଇନ୍‌ଟାକ୍) ର ଆଜୀବନ ସଭ୍ୟ ଥିଲେ ଏବଂ ଇନ୍‌ଟାକ୍‌ର ପ୍ରତ୍ୟେକ କାର୍ଯ୍ୟକ୍ରମରେ ଯୋଗ ଦେଉଥିଲେ । ଏକାଦଶ ଶତାବ୍ଦୀରେ ନିର୍ମିତ 'ଇନ୍ଦ୍ରେଶ୍ୱର ମନ୍ଦିର'ର ମରାମତି ଓ ପାରିପାର୍ଶ୍ୱିକ ରକ୍ଷାଣାବେକ୍ଷଣ ଦାୟିତ୍ୱ ନେଇ ତାହା ସୂଚାରୁରୂପେ ସମ୍ପନ୍ନ କରିଥିଲେ । ଭୁବନେଶ୍ୱରର ଯେ କୌଣସି ଉନ୍ନତିମୂଳକ କାମ ହୋଇଛି ସେଥିରେ ଗୁଣବାବୁଙ୍କର ଅକୁଣ୍ଠ ସମର୍ଥନ ରହିଥିଲା । ନିଜର ଅଧ୍ୟବସାୟ ଯୋଗୁଁ ସେ ପୂର୍ବତନ ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହାତାବ ଓ ପୂର୍ବତନ ମନ୍ତ୍ରୀ ସତ୍ୟପ୍ରିୟ ମହାନ୍ତିଙ୍କର ପ୍ରିୟପାତ୍ର ହୋଇପାରିଥିଲେ । ଜଣେ ସାଧାରଣ କର୍ମୀ ହିସାବରେ ଭୁବନେଶ୍ୱର ଜନସାଧାରଣଙ୍କର ଆସ୍ଥାଭାଜନ ହୋଇପାରିଥିଲେ ।

କେଦାରନାଥ ଗବେଷଣା ପ୍ରତିଷ୍ଠାନର ୧୧ ଜଣ ପ୍ରତିଷ୍ଠାତାମାନଙ୍କ ମଧ୍ୟରୁ ଗୁଣନିଧି ମହାପାତ୍ର ଥିଲେ ଅନ୍ୟତମ ଏବଂ ୧୯୮୨ ମସିହାରୁ ସେ ଏହି ପ୍ରତିଷ୍ଠାନର ସଭାପତି ଭାବେ ରହିଆସିଥିଲେ । ମୁଁ ଏହି ଅନୁଷ୍ଠାନର ଜଣେ ଆଜୀବନ ସଭ୍ୟ । ବହୁବାର ସେହି ଅନୁଷ୍ଠାନରେ ଓ ଇନ୍‌ଟାକ୍‌ର ସଭାସମିତିରେ ଗୁଣବାବୁଙ୍କ ସହିତ ମୋର ଦେଖା ହୋଇଛି ଏବଂ ତାଙ୍କର ସରଳ, ନିଷ୍କପଟ କଥାବାର୍ତ୍ତା ମୋତେ ଆକୃଷ୍ଟ କରିଛି ।

୨୦୧୧ ମସିହା ଏପ୍ରିଲ୍ ୨୮ ତାରିଖ (ମଧୁସୂଦନ ଦାସଙ୍କ ଜନ୍ମଦିବସ) ରେ 'ଆମ ଓଡ଼ିଶା' ସଂଗଠନ ତରଫରୁ ଗୁଣୁବାବୁଙ୍କୁ ବରିଷ୍ଠ ନାଗରିକ ହିସାବରେ ସମ୍ବର୍ଦ୍ଧିତ କରାଯାଇଥିଲା । 'ଆମ ଓଡ଼ିଶା' ର ସଭାପତି ଶ୍ରୀ ସୌମ୍ୟରଂଜନ ପଟ୍ଟନାୟକ ଗୁଣନିଧିବାବୁଙ୍କର ବହୁମୁଖୀ ପ୍ରତିଭାର ଉଦାହରଣ ଉପସ୍ଥାପିତ କରି ତାଙ୍କର ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ ।

ସମାଜସେବା ଏବଂ ଓଡ଼ିଶାର ସଂସ୍କୃତି ବିଷୟରେ ଚର୍ଚ୍ଚା କରିବାରେ ସେ ବହୁ ସମୟ ନିୟୋଜିତ କରୁଥିଲେ । ପୁରାଣର ବହୁ କିମ୍ବଦନ୍ତୀ ଉଦ୍ଧାର କରି ସେ ତାଙ୍କର ବକ୍ତବ୍ୟ ଉପସ୍ଥାପନ କରୁଥିଲେ । ସାମାଜିକ, ସାଂସ୍କୃତିକ ଓ ଆଧ୍ୟାତ୍ମିକ କ୍ଷେତ୍ରରେ ତାଙ୍କ ବହୁମୂଲ୍ୟ ଅବଦାନ ସ୍ମରଣୀୟ ହୋଇ ରହିବ । ସେ ତାଙ୍କ ରଚିତ ପୁସ୍ତକ 'ମୋ କଥା ମୋ ବ୍ୟଥା' ରେ ଅତି ସରଳ ଭାଷାରେ ଆମ ରାଜ୍ୟର ଚଳଣି ଏବଂ ତାଙ୍କ ଅନୁଭୂତି ବିଷୟରେ ବର୍ଣ୍ଣନା କରିଛନ୍ତି ।

୧୯୨୨ ମସିହା ମେ ୧୮ ତାରିଖରେ ଜନ୍ମଗ୍ରହଣ କରିଥିଲେ ସ୍ୱର୍ଗତ ଗୁଣନିଧି ମହାପାତ୍ର । ଓଡ଼ିଶାର ବିଶିଷ୍ଟ ଐତିହାସିକ କେଦାରନାଥ ମହାପାତ୍ରଙ୍କର ସେ ଥିଲେ ସାନଭାଇ । ଶୃଙ୍ଖଳିତ ଜୀବନ, କଠୋର କର୍ମପ୍ରବଣତା ଥିଲା ତାଙ୍କ ଜୀବନର ପାଥେୟ । ତାଙ୍କର ପ୍ରଗାଢ଼ ଆତ୍ମବିଶ୍ୱାସ ଥିଲା । ଆଚାର ବ୍ୟବହାରରେ ସେ ଥିଲେ ଅତ୍ୟନ୍ତ ସଂଯତ । ତାଙ୍କଠାରେ ଅହଂକାର ନଥିଲା । ତାଙ୍କ ଭଳି ମନୁଷ୍ୟ ଦୁର୍ଲ୍ଲଭ । ସେ ଥିଲେ ମିଷ୍ଟଭାଷୀ, ସ୍ନେହୀ ଓ ବନ୍ଧୁବତ୍ସଳ । ତାଙ୍କର ସ୍ନେହଶୀଳ ବ୍ୟବହାର ପାଇଁ ସେ ଥିଲେ ଲୋକପ୍ରିୟ । ୯୦ ବର୍ଷର ଜୀବନ ମଧ୍ୟରେ ସେ ବହୁ ଝଡ଼ଝଞ୍ଜାର ସମ୍ମୁଖୀନ ହୋଇଥିଲେ ମଧ୍ୟ ନିଜର ଗଭୀର ଆତ୍ମବିଶ୍ୱାସ ଓ ଈଶ୍ୱର ବିଶ୍ୱାସ ତାଙ୍କୁ କେବେହେଲେ ସତ୍ୟ, ନ୍ୟାୟ ଓ ଧର୍ମପଥରୁ ବିଚ୍ୟୁତ କରିପାରୁନଥିଲା । ସେ ଥିଲେ ଆଜୀବନ କର୍ମଯୋଗୀ । ତାଙ୍କର ସବୁ କାମରେ ରହିଥିଲା ଆନ୍ତରିକ ଉଦ୍ୟମ । ଜଣେ ନମ୍ର ଓ ଉଦାର ବ୍ୟକ୍ତି ଭାବରେ ସେ ସମସ୍ତଙ୍କର ସମ୍ମାନ ଓ ଆଦରର ପାତ୍ର ହୋଇପାରିଥିଲେ । ଆଜି ରାଜ୍ୟର ସମାଜସେବା କ୍ଷେତ୍ରରେ ସଚ୍ଚୋଟ କର୍ମୀଙ୍କ ଅଭାବ ପରିଲିକ୍ଷିତ ହେଉଥିବାବେଳେ ତାଙ୍କ ଭଳି ଜଣେ ସମାଜସେବୀ, ଆଜୀବନ ପରୋପକାରୀ ବ୍ୟକ୍ତିଙ୍କର ସହସା ବିୟୋଗ ସମସ୍ତଙ୍କୁ ଦାରୁଣ ଆଘାତ ଦେଇଛି ।

ଜନ୍ମହେଲେ ମୃତ୍ୟୁ ଅବଶ୍ୟମ୍ଭାବୀ ଏବଂ ତାକୁ କେହି ଏଡ଼ାଇପାରିବା ସମ୍ଭବ ନୁହେଁ । କବିବର ରାଧାନାଥଙ୍କର ଗୋଟିଏ ପଦ ଏହି ମହାନ ବ୍ୟକ୍ତିଙ୍କ ଉଦ୍ଦେଶ୍ୟରେ ଉଲ୍ଲେଖ କରି ମୁଁ ତାଙ୍କୁ ମୋର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

"ତୁମ୍ଭ ମାଟି ଦେହ ଗ୍ରାସିଛି ଶ୍ମଶାନ
ମାତ୍ର ଯଶୋଦେହେ ତୁମେ ଆୟୁଷ୍ମାନ ।"

ପୂର୍ବତନ କୁଳପତି, ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟ
ମୋ: ୯୨୩୮୩୦୦୨୬୫

# ପୂଜ୍ୟ ସଭାପତିଙ୍କୁ ହରାଇବାର ଦୁଃଖଦ ସ୍ମୃତି

-ବିନୋଦିନୀ ସାହୁ

ମଇ ମାସ ୨୪ତାରିଖ, ସମୟ ଦିନ ୧୨ଟା ୩୦ମି. ପରେ ହେବ । ଯୁଗ୍ମ ସଂପାଦକ ଭାଗୀରଥି ମହାସୁଆର ମୋ ସହିତ କିଛି ସମୟ ପୂର୍ବରୁ ଆମ ଘରେ ବସି କଥାବାର୍ତ୍ତା ହୋଇଗଲା ପରେ ଆମେ ମଧ୍ୟାହ୍ନଭୋଜନ ଅପେକ୍ଷାରେ ଥାଉ । ହଠାତ୍ ପ୍ରଫେସର ରାଜକିଶୋର ମିଶ୍ରଙ୍କ ଫୋନ୍ ପାଇଲି "ସଭାପତିଙ୍କ ଦେହାନ୍ତ ହୋଇଗଲା" । ବଡ଼ ବିଚଳିତ ଲାଗୁଥାଏ । ସଂଗେ ସଂଗେ ସଂପାଦକ ଓ ଯୁଗ୍ମ ସଂପାଦକ ତଥା ଅନ୍ୟ ସଭ୍ୟ, ସଭ୍ୟାମାନଙ୍କୁ ଖବର ଦେଲି । ଖୁବ୍ କମ୍ ସମୟ ମଧ୍ୟରେ ତାଙ୍କର ମରଶରୀର ଗବେଷଣା ପ୍ରତିଷ୍ଠାନ ନିକଟରେ ପହଞ୍ଚିଲା । ଅଳ୍ପ କେତେଜଣ ଉପସ୍ଥିତ ସଭ୍ୟଙ୍କ ଗହଣରେ ବିଦାୟ ଦେବାକୁ ପଡ଼ିଥିଲା ତାଙ୍କୁ ।

୧୯୮୨ ମସିହାରୁ ୰ପଣ୍ଡିତ ନୀଳମଣି ମିଶ୍ରଙ୍କ ସମେତ ଅନ୍ୟ କେତେଜଣ ସଭ୍ୟଙ୍କୁ ନେଇ ଗଢ଼ି ଉଠିଥିଲା କେଦାରନାଥ ଗବେଷଣା ପ୍ରତିଷ୍ଠାନ । ତାର ସ୍ଥାୟୀ ସଭାପତି ପଦ ମଣ୍ଡନ କରିଆସୁଥିଲେ ଗୁଣନିଧି ମହାପାତ୍ର । ବାସ୍ତବିକ, ନାମର ଯଥାର୍ଥତା ପ୍ରତିପାଦନ କରିଛନ୍ତି ସେ ।

ପ୍ରତିଦିନ ଅପରାହ୍ନରେ ପାଠାଗାରକୁ ଆସନ୍ତି, ମୋ ଟେବୁଲ ନିକଟରେ ବସନ୍ତି । ଯାହା କିଛି ସମସ୍ୟା ଥାଏ ସେ ସମାଧାନ କରିଦିଅନ୍ତି । ୨୦୦୦ ମସିହାରୁ ମୋର ତାଙ୍କ ସହ ସଂପୃକ୍ତି । ସେତେବେଳେ ଡ଼ଃ ଭଗବାନ ପଣ୍ଡା ସମ୍ପାଦକ ଥାଆନ୍ତି । ମୋ ସ୍ୱାମୀଙ୍କ ଆକସ୍ମିକ ଦେହାନ୍ତ ଫଳରେ ସହାନୁଭୂତିବଶତଃ ମୋ ନିଯୁକ୍ତି ଏଠାରେ ହେଲା । ପ୍ରଥମେ ମୋର ପାଠାଗାର ସମ୍ବନ୍ଧରେ କୌଣସି ଜ୍ଞାନ ନଥିଲା । ବର୍ତ୍ତମାନ ସେ ସବୁ ଅଭ୍ୟାସରେ ପରିଣତ ହୋଇଯାଇଛି, ଦାୟିତ୍ୱ ମଧ୍ୟ ବଢ଼ି ଯାଇଛି । ମୋର ଦୁଃଖଦ ମୂହୂର୍ତ୍ତରେ ପ୍ରଥମ ବ୍ୟକ୍ତି ଯାହାଙ୍କୁ ମୁଁ ଦେଖିଥିଲି କ୍ୟାପିଟାଲ ହସ୍‌ପିଟାଲରେ ମୋର ସ୍ୱାମୀଙ୍କ ନିକଟରେ, ସେ ହେଉଛନ୍ତି ୰ ଗୁଣନିଧି ମହାପାତ୍ର । ଅନୁଷ୍ଠାନର ପ୍ରତ୍ୟେକ ସଭା ତାଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୁଏ । ସଭାଶେଷରେ ଭାଷଣ ପ୍ରସଙ୍ଗରେ ସେ ଅନୁଷ୍ଠାନର ଅତୀତ ଇତିହାସ ବର୍ଣ୍ଣନା କରିବା ସଂଗେ ସଂଗେ ସମସ୍ତେ ଏଠାକୁ ଆସି ଏହାର ଆଜୀବନ ସଦସ୍ୟ ହେବାପାଇଁ ଅନୁରୋଧ କରିଥାନ୍ତି । ଗବେଷଣା ପ୍ରତିଷ୍ଠାନର ଯେଉଁଆଡ଼େ ଚାହିଁଲେ ତାଙ୍କ ଅବଦାନ ଆଖି ଆଗରେ ନାଚି ଉଠେ । ପାଠାଗାର କକ୍ଷର ନବୀକରଣ, ଗୁଣନିଧି କକ୍ଷ ନିର୍ମାଣ କେଦାରନାଥଙ୍କ ପ୍ରତିମୂର୍ତ୍ତି ସ୍ଥାପନ ଓ ନୂତନ ବିଜୁଳି ପଙ୍ଖା ସଂଯୋଗ ସବୁକିଛି ତାଙ୍କ ପ୍ରଚେଷ୍ଟାରେ ହୋଇଥିଲା । ଅନୁଷ୍ଠାନରେ ଅନୁଷ୍ଠିତ ସଭାରେ ସମ୍ମାନିତ ବ୍ୟକ୍ତିଙ୍କ ପାଇଁ ସାଲ୍ କିଣିବା, ସାର୍ଟିଫିକେଟ ବନ୍ଧାଇ କରିବା, ରବର ଷ୍ଟାମ୍ପ ଓ ଅନ୍ୟାନ୍ୟ ଆବଶ୍ୟକୀୟ ସାମଗ୍ରୀ କିଣିବାର ଦାୟିତ୍ୱ ସେ ବହନ କରୁଥିଲେ । କେବେ କେବେ ଭୁବନେଶ୍ୱର ବାହାରକୁ ଗଲେ ମୋତେ ଫୋନ୍ କରି ଗବେଷଣା ପ୍ରତିଷ୍ଠାନ ବିଷୟରେ ପଚାରି ବୁଝୁଥିଲେ । କିଛି ସମସ୍ୟା ଥିଲେ "ମୁଁ ଗଲେ ଯାହା କରିବା" ବୋଲି କହୁଥିଲେ । ହସ୍‌ପିଟାଲରେ ଚିକିତ୍ସିତ ହେଉଥିବା ସମୟରେ ସେ ଦୁଇତିନିଥର ମୋ ସହିତ ପ୍ରତିଷ୍ଠାନ ବିଷୟରେ ଆଲୋଚନା କରିଛନ୍ତି । ମାତ୍ର କାର୍ଯ୍ୟବ୍ୟସ୍ତତା ହେତୁ ମୁଁ ତାଙ୍କୁ ଦେଖା କରି ପାରିନଥିଲି । ଅନେକ ସମୟରେ ହାତଲେଖାଟିଏ ଧରି ସେ ପହଞ୍ଚିଯାଆନ୍ତି ମୋ ନିକଟରେ ଏବଂ କହନ୍ତି, "ଭଲକରି ଟିକେ ଉତାରି ଦେ, ଡି.ଟି.ପି. କରିବାକୁ ଦେବି" । ତାଙ୍କୁ ଏକ ବିଶେଷ ପରିଚିତି ଆଣି ଦେଇଥିବା ତାଙ୍କ ଜୀବନୀ ପୁସ୍ତକ 'ମୋ' କଥା ମୋ ବ୍ୟଥା'ର ପରିବର୍ଦ୍ଧିତ ସଂସ୍କରଣ କରିବା ପାଇଁ ଆଶା ରଖିଥିଲେ । ଗବେଷଣା ପ୍ରତିଷ୍ଠାନର 'ଖୁରୁଧା ଇତିହାସ' ଓ 'ଲିଙ୍ଗରାଜ ମନ୍ଦିର: ଏକ ସାଂସ୍କୃତିକ ସର୍ବେକ୍ଷଣ' ପୁସ୍ତକର ମୁଦ୍ରଣ ଦାୟିତ୍ୱ ବହନ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ସବୁକିଛି ଅସଂପୂର୍ଣ୍ଣ ରହିଗଲା । ସଦା ଚଳଚଞ୍ଚଳ ପରୋପକାରୀ ମଣିଷଟିଏ ଯେ ଆମ

ନିକଟରୁ ଏତେ ଶୀଘ୍ର ଦୂରେଇ ଯିବେ ଏ ଆଶା ମନରେ ନଥିଲା । ମୃତ୍ୟୁର ଉପସ୍ଥିତି ତାଙ୍କର ଏତେ ନିକଟରେ ବୋଲି କିଏ ଜାଣିଥିଲା ?

ବର୍ତ୍ତମାନ ସେ ସବୁର ପରିସମାପ୍ତି ଘଟିଛି । ସବୁକୁ ପଛରେ ପକାଇ ସେ ନିଜର ଗନ୍ତବ୍ୟ ପଥରେ ଆଗେଇ ଯାଇଛନ୍ତି । ତାଙ୍କର ଅମର ଆତ୍ମା ଚିରଶାନ୍ତି ଲାଭକରୁ ଓ ତାଙ୍କ ଶୁଭଦୃଷ୍ଟି ଆମ ଉପରେ ପଡୁ, ଏହାହିଁ ପରମେଶ୍ୱରଙ୍କ ନିକଟରେ ପ୍ରାର୍ଥନା ।

**ଗ୍ରନ୍ଥାଗାରିକା**

**କେଦାରନାଥ ଗବେଷଣା ପ୍ରତିଷ୍ଠାନ**



# ଗୁଣନିଧି ସାର୍ ଆଉ ନାହାନ୍ତି

**-ସୁମନ୍ତ କୁମାର ବେହେରା**

ସେହି ଦିନ ଥିଲା ମଇ ମାସ ୨୪ତାରିଖ । ସମୟ ମଧ୍ୟାହ୍ନ ୧୨ଟା । ମୁଁ ରୁମ୍‌ରେ ଥାଏ । ଗବେଷଣା ପ୍ରତିଷ୍ଠାନରୁ ମାଡ଼ାମ ଫୋନ୍ କଲେ । ଗବେଷଣା ପ୍ରତିଷ୍ଠାନକୁ ଆସିଲି । ମୁଁ ଦେଖିଲି ସଂପାଦକ, ଯୁଗ୍ମ ସଂପାଦକ ଓ ଅନ୍ୟ ସଭ୍ୟାସଭ୍ୟମାନେ ସେଠାରେ ସାର୍‌ଙ୍କୁ ଅପେକ୍ଷା କରିଛନ୍ତି । କିଛି ସମୟ ପରେ ସାର୍ ଆସି ଗବେଷଣା ପ୍ରତିଷ୍ଠାନରେ ପହଞ୍ଚିଲେ । ସେଠାରେ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ଦେଇ ସବୁ ଦିନ ପାଇଁ ବିଦାୟ ଦେଲୁ ।

ତାଙ୍କ ସହିତ ମୋର ଗୋଟିଏ ବର୍ଷର ପରିଚୟ । ମୁଁ ଗବେଷଣା ପ୍ରତିଷ୍ଠାନରେ ନିଯୁକ୍ତି ପାଇବା ପୂର୍ବରୁ ଦେଖେ ସବୁଦିନ ସେ ଅପରାହ୍ନ ପାଞ୍ଚଟା ସମୟରେ ପାଠାଗାରକୁ ଆସନ୍ତି । କିଛି ସମୟ ରହି ଚାଲିଯାଆନ୍ତି । ନିଯୁକ୍ତି ପରର ଘଟଣା; ତାଙ୍କୁ ଦେଖିଲେ ମନରେ ଭକ୍ତି ଆସେ । ଧୀର ନମ୍ର ସ୍ୱଭାବ ଓ ହସ ହସ ମୁହଁ । ଯେଉଁଠି ଦେଖିଲେ, କ'ଣ ଭଲ ଅଛୁ ବୋଲି ପଚାରନ୍ତି ।

ମେ ୧୮ତାରିଖ ତାଙ୍କ ଜନ୍ମ ଦିନ ବୋଲି ମୁଁ ଶୁଣିଥିଲି । ୨୦ତାରିଖ ଥିଲା ଏ କରୁଣା ସାଗର ବେହେରାଙ୍କ ଶ୍ରାଦ୍ଧ ଦିବସ । ଅନୁଷ୍ଠାନର କାମରେ ବ୍ୟସ୍ତ ଥାଏ । ସାର୍‌ଙ୍କ ଅସୁସ୍ଥତା ଖବର ପାଇଥିଲେ ମଧ୍ୟ ଦେଖା କରିବା ପାଇଁ ଆଶା ରଖିଥାଏ । ୧୮ତାରିଖ ଦିନ ପାଠାଗାରରୁ ଅନୁମତି ନେଇ ମୁଁ ଦେଖା କରିବାକୁ ଯାଉଥାଏ । ଖୁବ୍ କମ୍ ସମୟ ପାଇଁ ୫ଟାରୁ ୫.୩୦ମି. ମଧ୍ୟରେ ସାର୍‌ଙ୍କୁ ଦେଖା କରିଦେବି । ସେହି ସମୟରେ ଖୁବ୍ ତରବରରେ ଯାଉଥିବା ମୁଁ ଦୁର୍ଘଟଣାଗ୍ରସ୍ତ ହୋଇ ଅଧାବାଟରୁ ଫେରି ଆସିଲି ଆଉ ସାର୍‌ଙ୍କ ସହିତ ଦେଖା ହୋଇ ପାରିଲା ନାହିଁ ।

ତାଙ୍କ ବିୟୋଗରେ ମୁଁ ଗଭୀର ଭାବେ ମର୍ମାହତ ତାଙ୍କ ଆଶୀର୍ବାଦ ଆମ୍ଭମାନଙ୍କ ଉପରେ ଓଜାଡ଼ି ହୋଇପଡୁ ଓ ପରମାତ୍ମା ତାଙ୍କର ଆତ୍ମାକୁ ଶାନ୍ତିରେ ରଖନ୍ତୁ ବୋଲି ପ୍ରାର୍ଥନା ।

ସହାୟକ

କେଦାର ନାଥ ଗବେଷଣା ପ୍ରତିଷ୍ଠାନ

## ମାତ୍ର ଯଶୋଦେହେ ତୁମ୍ଭେ ଆୟୁଷ୍ମାନ

-ଶଙ୍କର୍ଷଣ ପଣ୍ଡା

ପିତୃମାତୃ ଦତ୍ତ ନାମକୁ ସାର୍ଥକ କରି ଜଣେ ବର୍ଷୀୟାନ୍ ଯଶସ୍ୱୀ ପୁରୁଷ ଗୁଣନିଧି ମହାପାତ୍ର ମେ' ୨୪ତାରିଖରେ ଇହଲୀଳା ସମ୍ବରଣ କଲେ ।

ତାଙ୍କ ସହିତ ମୋର ପରିଚୟ ଖୁବ୍ ବେଶୀରେ ୫/୬ ବର୍ଷର । ଲାଇବ୍ରେରୀର ଆକର୍ଷଣରେ ଆକର୍ଷିତ ହୋଇ ମୁଁ କେଦାରନାଥ ଗବେଷଣା ପ୍ରତିଷ୍ଠାନକୁ ଯାଏ ଏବଂ ଆଜୀବନ ସଭ୍ୟହୁଏ । ସେହି ପରିପ୍ରେକ୍ଷୀରେ ଗୁଣନିଧିବାବୁଙ୍କ ସହିତ ମୋର ପରିଚୟ । ମୁଁ ଯେଉଁଦିନ ସେଠାକୁ ଯାଏ ସେଦିନ ତାଙ୍କୁ ସେଠାରେ ଦେଖେ । ତେଣୁ ଅନୁଷ୍ଠାନଟି ସହିତ ତାଙ୍କର ଆତ୍ମିକ ସଂପର୍କ ଗଢ଼ି ଉଠିଥିବାର ମୁଁ ଅନୁଭବ କଲି ।

ସରଳ, ନିରାଡ଼ମ୍ବର ଋଷିପ୍ରତିମ ବ୍ୟକ୍ତିତ୍ୱ । ସ୍ୱଳ୍ପବାକ୍ ଅଥଚ ସ୍ନେହୀ ମଣିଷଟିଏ ବୋଲି ବାରି ହୋଇ ପଡ଼ନ୍ତି । ସେ ଥିଲେ ଭୁବନେଶ୍ୱର ମ୍ୟୁନିସିପାଲିଟିର ପ୍ରଥମ ଚେୟାରମ୍ୟାନ । ଋହିଁଥିଲେ ରାଜନୀତିରେ କାହିଁ କେତେଦୂର ଯାଇ ପାରିଥାଆନ୍ତେ । ମାତ୍ର ସରଳ ସୁକୁମାର ସରଳ ହୃଦୟ ପଙ୍କିଳ ରାଜନୀତିର ପିଚ୍ଛିଳ ପଥକୁ ପରିହାର କରି ତାଙ୍କୁ ସାହିତ୍ୟ ଓ ସଂସ୍କୃତି ଦିଗକୁ ଟାଣିନେଲା । ନିଜର ବଡ଼ଭାଇ ବିଶିଷ୍ଟ ଗବେଷକ, ଐତିହାସିକ କେଦାରନାଥ ମହାପାତ୍ରଙ୍କ ସ୍ମୃତିରେ ସେ ଗଢ଼ି ତୋଳିଲେ କେଦାରନାଥ ଗବେଷଣା ପ୍ରତିଷ୍ଠାନ । ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ସେହି ଅନୁଷ୍ଠାନର ଉତ୍ତରୋତ୍ତର ଉନ୍ନତି କଳ୍ପେ ତାଙ୍କର ଚିନ୍ତା ଓ ପ୍ରଚେଷ୍ଟା ଅନବରତ ଜାରି ରହିଥିଲା ।

ମୁରବିତୁଲ୍ୟ ବ୍ୟକ୍ତି ଥିଲେ । ତାଙ୍କର ଅମାୟିକ ବ୍ୟବହାରରେ ଆକର୍ଷିତ ହୋଇ ବହୁ ଗୁଣୀ, ଜ୍ଞାନୀ, ବିଦ୍ୱାନ, କେଦାରନାଥ ଗବେଷଣା ପ୍ରତିଷ୍ଠାନର ସଭ୍ୟ ହୋଇଛନ୍ତି । ସେ ଏହି ଅନୁଷ୍ଠାନ ମାଧ୍ୟମରେ ବହୁ ସାରସ୍ୱତ ସାଧକ ତଥା ବିଦ୍ୟାନ୍‌ଙ୍କୁ ଉତ୍ସାହିତ କରିଛନ୍ତି , ସମ୍ବର୍ଦ୍ଧିତ କରିଛନ୍ତି ।

ତେଣୁ କବିଙ୍କ ଭାଷାରେ ଏହାହିଁ ଅମରତ୍ୱ ତାଙ୍କର ପାର୍ଥିବ ଶରୀରର ଅବର୍ତ୍ତମାନର ମଧ୍ୟ ସେ ଜୀବିତ, କର୍ମରତ ।

"ତୁମ ମାଟି ଦେହ ଗ୍ରାସିଛି ଶ୍ମଶାନ

ମାତ୍ର ଯଶୋଦେହେ ତୁମ୍ଭେ ଆୟୁଷ୍ମାନ"

ଏହି ଉକ୍ତିଟି ଗୁଣନିଧି ମହାପାତ୍ରଙ୍କ ପ୍ରତି ପ୍ରଯୁଜ୍ୟ । ତାଙ୍କର ତିରୋଧାନରେ ବ୍ୟଥିତ ମୁଁ ତାଙ୍କର ଅମର ଆତ୍ମା ପ୍ରତି ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ବାଣୀଶ୍ରୀ

୨୦, ଲୁଇସ୍‌ରୋଡ୍

ରବିଟକିଜ୍ ଛକ, ଭୁବନେଶ୍ୱର-୧୪



ରାଜ୍ୟପାଳ ରାମେଶ୍ୱର ଠାକୁରଙ୍କ ଦ୍ୱାରା ସମ୍ବର୍ଦ୍ଧିତ



ମାଣିକ ବିଶ୍ୱନାଥ ଦାତବ୍ୟ ନ୍ୟାସ ଉତ୍ସବରେ ପୁସ୍ତକ ଉନ୍ମୋଚନ ଓ ସମ୍ବର୍ଦ୍ଧନା ପ୍ରାପ୍ତି





ସାହଣମେଲା ଅନୁଷ୍ଠାନ ଦ୍ୱାରା ସମ୍ବର୍ଦ୍ଧନା



ପଣ୍ଡିତ ରଘୁନାଥଙ୍କ ଶ୍ରାଦ୍ଧୋତ୍ସବରେ ଅତିଥି




'ଏକାମ୍ରଗାନ୍ଧୀ ପଣ୍ଡିତ ରଘୁନାଥ' ପୁସ୍ତକ ଉନ୍ମୋଚନ ଅବସରର ଦୁଇଟି ବିଶେଷ ମୂହୁର୍ତ୍ତ



# ଯେ ଫୁଲ ମଉଳେ ନାହିଁ

-ଲଡୁକେଶ୍ୱର ସାହୁ

ବିଚିତ୍ର ଏ ସୃଷ୍ଟି । କଳା ବାଲା ଖିଆଲରେ କରିଛି ନା ଭାବିଚିନ୍ତି, କେଉଁଠି କ'ଣ ରଖିବ, କେଉଁଠି କ'ଣ କରିବ, କାହାକୁ କି ରୂପ ଦେବ, କି ପରିସ୍ଥିତି କାହା ପାଇଁ ଲୋଡ଼ା- ସବୁକିଛି ଠିକ୍‌ଠାକ୍ ଯୋଜନାବଦ୍ଧ । ସୃଷ୍ଟିଟା ନିଖିନ୍ତ ସୁନ୍ଦର ଗୋଟେ ଫୁଲମାଳ ପରି । ସେଠିରେ ଗୁନ୍ଥା ହୋଇଛି ସୁଖଦୁଃଖ, ହସକାନ୍ଦ, ଭଲମନ୍ଦ, ପକାଉଠା ଗୋଟାଏ ପରେ ଗୋଟାଏ । ପ୍ରତିଟି ମଉଳି ଯିବ ତା ବାଟରେ, ତା ସମୟରେ । ଅନ୍ୟ ଭାଷାରେ ଯେ ଆସିଛି ସେ ଯିବ । ଏଥିରେ ଲେସ ମାତ୍ର ବ୍ୟତିକ୍ରମ ନାହିଁ । ଯାହାକିଛି ହୋଇଛି, ଯାହା କିଛି ହେଉଛି ଆଉ ଯାହା ହେବ ଏସବୁ ଆମ ହାତରେ ନାହିଁ, କଳାବାଲାର ହାତ ମୁଠାରେ । ଏପଟ ସେପଟ ହେବାର ନାହିଁ କି ଚମକିବାର ନାହିଁ । ସେ ଯାହା କରିଛି, କରୁଛି ଓ କରିବ ସେ ସବୁକୁ ଆମେ ଆଦରିନେଲୁ । ମାତ୍ର ଏହାର ଅର୍ଥ ନୁହେଁ ଯେ ଆମେ ସବୁବେଳେ ତା' ପାଖରେ ବୋକା ବନିବୁ । ଏଇ ଆମ ଗୁଣନିଧିବାବୁ ଏ ବିରାଟ ସୃଷ୍ଟିରେ ବାରି ହୋଇଯିବା ମଣିଷଟିଏ । ସେ ଆମର ଗୋଟାପଣେ ହେଲେ ଆମ ତାଙ୍କର ଗୋଟାପଣେ ଥିଲୁ । କେଉଁ ଗୁଣ ତାଙ୍କର ନଥିଲା ? ତାଙ୍କ ଦ୍ୱାରା କାହାରି ଲେସ ମାତ୍ର ଅପକାର ହେବାର ନଥିଲା । ଅସରନ୍ତି ଗୁଣ ଗାରିମାର ଅମୂଲ୍ୟ ପସରା ସେ ଥିଲେ । ତାଙ୍କର ବିରଳ ବ୍ୟକ୍ତିତ୍ୱ ଝଟକୁଥିଲା । ଏଇ ଭୁବନେଶ୍ୱରରେ ସେ ଥିଲେ ଜଣେ ଅତି ପୁରୁଣା ଲୋକ । ଏକାନବେ ଛୁଇଁଲା, ଗଲେ । ହେଲେ ତାଙ୍କୁ ଭୁଲିହେଉନାହିଁ ।

ସମସ୍ତଙ୍କୁ ନିଜର କରିବା ତାଙ୍କର ସ୍ୱଭାବସୁଲଭ ଗୁଣ ଥିଲା । ଦୁଃଖିର ଦଃୁଖରେ ସେ ମ୍ରିୟମାଣ ହୋଇପଡୁଥିଲେ । ସେ ମଣିଷଟି ଆଜି ଆମ ପାଖରେ ନଥିଲେ ମଧ୍ୟ ତାଙ୍କ ଅଧିର ପ୍ରାଣର ସ୍ପନ୍ଦନ ଆମ ସମସ୍ତଙ୍କୁ ସ୍ପର୍ଶ କରୁଛି । ଏ ମାଟିର ତାତି ସେ ଅନୁଭବ କରିଥିଲେ । ଯେତେ ଦଃୁଖଯାତନା ହେଉ ପଛେ ସମ୍ଭାଳି ନେବାପାଇଁ ତାଙ୍କ ପ୍ରେରଣା ଆମକୁ ସାହସୀ କରାଉଥିଲା । ରାଜନୀତି କରିବାପାଇଁ ତାଙ୍କ ମନୋବଳ ଥିଲା ଏଇ ଅନ୍ତରଙ୍ଗତା ପାଇଁ । ସେ କାଳର ଭୁବନେଶ୍ୱର ମ୍ୟୁନିସିପାଲଟିର ସର୍ବଚ୍ଚୋ କର୍ତ୍ତା ହୋଇ ସର୍ବସାଧାରଣ ହିତାର୍ଥେ ଯେଉଁ ଆନ୍ତରିକତା ବା ଆଗ୍ରହ ତାଙ୍କର ଥିଲା, ବହୁ କାର୍ଯ୍ୟ କଳାପରେ ମଧ୍ୟ ସେ ନିଜକୁ ସନ୍ତୁଷ୍ଟ କରି ପାରିନଥିଲେ । ଅନ୍ୟ ମୁହଁରେ ମୁହଁ ଯୋଡ଼ି, ଅନ୍ୟ ହାତରେ ହାତ ରଖି, ଅନ୍ୟ ଗୋଡ଼ରେ ଦଉଡ଼ି ସଂଗ୍ରାମର ବନ୍ଧୁର ପଥରେ କିପରି ଆଗେଇବାକୁ ହୁଏ, ସେ କଳା ତାଙ୍କୁ ଜଣାଥିଲା । ଯାହା ସମ୍ପର୍କରେ ସେ ଆସିଛନ୍ତି ସେ ତାଙ୍କର ଆପଣାର ହୋଇଯାଇଛି ଏବଂ ଆଜି ତାଙ୍କୁ ମନେ ପକାଇ ଆଖି ଓଦା କରୁଛି । ଭଲ ମଣିଷର ଏକ ବଳିଷ୍ଠ ଉଦାହରଣ ସେ ଆମକୁ ଦେଇପାରିଛନ୍ତି ।

ସାରା ଜୀବନ ବିଳାସବେସନ କ'ଣ ସେ ଜାଣିନଥିଲେ । ସମ୍ବଳ ଅଭାବ ନଥିଲା; ଅଥଚ ପ୍ରବଳ ଇଚ୍ଛାଶକ୍ତି ଯୋଗେ ସେ ଜଣେ ସାଧକ ପରି ଏକ ସରଳ, ନିରାଡ଼ମ୍ବର ଓ ଅମାୟିକ ଦୀର୍ଘ ଜୀବନଯାପନ କଲେ ଏବଂ ଏକ ବିରଳ ଦୃଷ୍ଟାନ୍ତ ଠିଆ କରିଦେଇଗଲେ । ବ୍ୟକ୍ତିଗତ ଭାବେ ମୁଁ ତାଙ୍କର ଅନ୍ତରଙ୍ଗତାର ସ୍ପର୍ଶ ପାଇଛି । କେତେକ ସାରସ୍ୱତ ସମାରୋହରେ ସେ ଯେଉଁଠି ସମ୍ମାନିତ ହୋଇଛନ୍ତି ମୁଁ ମଧ୍ୟ ସେଠାରେ ସମ୍ବର୍ଦ୍ଧିତ ହେବାର ସୁଯୋଗ ପାଇଛି । ତାଙ୍କୁ ଅତି ନିକଟରୁ ଜାଣିବାର ସୁଯୋଗ ପାଇ ନିଜକୁ ଧନ୍ୟ

ମନେକରୁଛି । ରାମେଶ୍ୱର ବିଶ୍ୱଶାନ୍ତି ଯଜ୍ଞାନୁଷ୍ଠାନରେ ସେ ଉପସଭାପତି ରହି ତାଙ୍କ ନେତୃତ୍ୱର ଉଷ୍ମତା ଲାଭ କରିବାର ସୁଯୋଗ ସଭ୍ୟମାନଙ୍କୁ ଦେଇଥିଲେ । ଜଣେ ପ୍ରବୀଣ ସଂଗଠକ ଭାବରେ ସେ ବହୁ ଅନୁଷ୍ଠାନକୁ ସାହାଯ୍ୟ ସହଯୋଗର ହାତ ବଢ଼ାଇଛନ୍ତି ।

ସେ ଆମକୁ ଛାଡ଼ି ଆରପାରିକୁ ଚାଲିଯାଇଛନ୍ତି ସତ, ମାତ୍ର ତାଙ୍କ ବ୍ୟକ୍ତିତ୍ୱ, ବ୍ୟବହାର ଓ ସହଯୋଗ ସଦା ସ୍ମୃତିରେ ରହିବ । ସେ ସ୍ମୃତି ଅମର ଓ ଜାଜ୍ୱଲ୍ୟମାନ ।

ଗୌତମ ନଗର-୬୩୦

ଭୁବନେଶ୍ୱର



# ବାର୍ଦ୍ଧକ୍ୟବିହୀନ ବୃଦ୍ଧଙ୍କ ତାରୁଣ୍ୟର ମହାପ୍ରୟାଣ

- ପ୍ର:(ଡ:) ବ୍ରଜକିଶୋର ସ୍ୱାଇଁ

ଶ୍ରୀଯୁକ୍ତ ଗୁଣନିଧି ମହାପାତ୍ର (ଗୁଣ ମଉସା) ମହୋଦୟଙ୍କ ସହିତ ଦୀର୍ଘ ପଚିଶ ବର୍ଷରୁ ଉର୍ଦ୍ଧ୍ୱ କାଳ ନିରବଚ୍ଛିନ୍ନ ଭାବରେ ସଂପର୍କ ରକ୍ଷା କରିବାର ସୁଯୋଗ ଲାଭ କରିଛି । ବୟସାଧିକ୍ୟ ମାନସିକତାର ସାମାନ୍ୟତମ ଆଭାସ ତାଙ୍କ କର୍ମଠ ଜୀବନରେ ଅନୁଭବଗମ୍ୟ ହୁଏ ନାହିଁ । କେଦାରନାଥ ଗବେଷଣା ପ୍ରତିଷ୍ଠାନର ଅନେକ ସଭାରେ ସଭାପତିତ୍ୱ କରିବାର ଦୃଶ୍ୟ ଏବଂ ସମାପନାନ୍ତେ ଶାନ୍ତ ଗଭୀର ସଂକ୍ଷିପ୍ତ ସାଭାପତ୍ୟ ଅଭିଭାଷଣ ତାଙ୍କ ଧୈର୍ଯ୍ୟ ଓ ସହନଶୀଳତାକୁ ସୂଚାଇଥାଏ । ପ୍ରତିଷ୍ଠାନର ସାଧାରଣ ସଦସ୍ୟତାଠାରୁ ଆରମ୍ଭ କରି ଅଜୀବନ ସଦସ୍ୟତା ନିମନ୍ତେ ବୁଦ୍ଧିଜୀବୀ ତଥା ଗବେଷକମାନଙ୍କୁ ସ୍ୱୀୟ ବ୍ୟକ୍ତିତ୍ୱ ଏବଂ ସାଂଗଠନିକ ସାମର୍ଥ୍ୟ ଜରିଆରେ ପ୍ରବର୍ତ୍ତାଇବାରେ ସେ ଜଣେ ସଫଳ ବ୍ୟକ୍ତିତ୍ୱର ଅଧିକାରୀ । ସରକାରୀ ଅନୁଦାନ ଅପେକ୍ଷା ବୁଦ୍ଧିଜୀବୀ ତଥା ପାଠକ-ପାଠିକା ମାନଙ୍କର ପ୍ରତିଷ୍ଠାନ ପ୍ରତି ସହଯୋଗ ଭିତ୍ତିକ ଅବଦାନ ଉପରେ ଗୁରୁତ୍ୱ ଦେଇ ସେ ସମସ୍ତଙ୍କର ସଂପୃକ୍ତି ନିମନ୍ତେ ବ୍ୟକ୍ତିଗତ ଭାବରେ ମୁକ୍ତ ଚିତ୍ତରେ ଆକାଙ୍କ୍ଷା ଓ ଆବେଗ ସୃଷ୍ଟି କରୁଥିଲେ । ତାଙ୍କ ଉଦ୍ୟମରେ ପ୍ରତିଷ୍ଠାନ ତରଫରୁ 'ଏକାମ୍ର ସମ୍ମାନ' ପ୍ରବର୍ତ୍ତନ ଏକ ଐତିହାସିକ ପଦକ୍ଷେପ । ଆକୃତିରେ ଗମ୍ଭୀର, ପ୍ରକୃତିରେ କର୍ମଠ, ବାର୍ଦ୍ଧକ୍ୟରେ ତରୁଣ ତଥା ସାଂଗଠନିକ ଆଭିଜାତ୍ୟରେ ପ୍ରବୀଣ ଶ୍ରୀଯୁକ୍ତ ଗୁଣନିଧି ମହାପାତ୍ରଙ୍କର ମହାପ୍ରୟାଣ ଏକାଧାରରେ ବାର୍ଦ୍ଧକ୍ୟ ଓ ତାରୁଣ୍ୟର ମହାମିଳନକୁ ଧୂଳିସାତ୍ କରିଦେଇଛି । କେଦାରନାଥ ଗବେଷଣା ପ୍ରତିଷ୍ଠାନ, ସଂପ୍ରତି ଏହି ମହାମିଳନର କେନ୍ଦ୍ରବିନ୍ଦୁ, ତାଙ୍କ ସ୍ମୃତିର ଆଲେଖ୍ୟ ବହନ କରି ଆଶା ଓ ପ୍ରତ୍ୟାଶାର ମ୍ଳାନିମାର ସ୍ପର୍ଶ ଅନୁଭବ ନ କରୁ - ଏତିକି ମାତ୍ର ଭରସା କରି ସ୍ୱର୍ଗତ ମହାପାତ୍ରଙ୍କ ପ୍ରତି ମୋର ହୃଦୟଭରା ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଅଛି ।

ଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ

ପୁରୀ

# ଆମ ମୁରବୀ ଗ୍ଲିଗଲେ

-ଲିଙ୍ଗରାଜ ସାହୁ

ଗୁଣବାବୁ ଆମ ପାଇଁ ଥିଲେ ଜଣେ ମୁରବୀ, ଭୁବନେଶ୍ୱରର କୌଣସି ଆଞ୍ଚଳିକ ସମସ୍ୟା ହେଲେ ସେ ବ୍ୟସ୍ତ ହୋଇପଡ଼ନ୍ତି । ସମସ୍ତଙ୍କ ସହ ଆଲୋଚନା କରି ଏହାର ସମାଧାନ ପାଇଁ ଅଣ୍ଟା ଭିଡନ୍ତି । ମୁଁ ଭୁବନେଶ୍ୱରର ଯେଉଁ କୋଣ ଅନୁକୋଣକୁ ଯାଏ ସେଠାରେ ତାଙ୍କ ସୁନାମ ଶୁଣେ । ବହୁ ଲୋକେ କୁହନ୍ତି ନବେବର୍ଷ ବୟସରେ ସେ ଯାହା କରୁଛନ୍ତି ଯୁବକମାନେ ବି କରିପାରିବେ ନାହିଁ । ନବେବର୍ଷ ବୟସରେ ବି ସେ ସବୁଥିରେ ସକ୍ରିୟ ରହି ନିଜ ଗାଡ଼ିରେ କର୍ମକର୍ତ୍ତାଙ୍କୁ ବସାଇ ବିଭିନ୍ନ ସଂସ୍ଥା ପାଇଁ କାମ କରନ୍ତି । ସେ ମହତାବ ଜୟନ୍ତୀ ପାଳନ, ପଣ୍ଡିତ ରଘୁନାଥଙ୍କ ଜୟନ୍ତୀ ପାଳନ, ଏକାମ୍ର ସେବା ସଂଘ ମାଧ୍ୟମରେ ସେବା କାର୍ଯ୍ୟ, ଲିଙ୍ଗରାଜଙ୍କ ଶୀତଳଷଷ୍ଠୀ ଯାତ୍ରା, ତାସଓ୍ୱେଲ ସଂସ୍ଥା, କେଦାରନାଥ ଗବେଷଣା ପ୍ରତିଷ୍ଠାନ, ନାଗେଶ୍ୱର ମନ୍ଦିର ପରିଚାଳନା କମିଟି, ରାମେଶ୍ୱର ମହାଯଜ୍ଞ, ଓଡ଼ିଶା ବ୍ରାହ୍ମଣ ମହାସଭା ଆଦି ବହୁ ଅନୁଷ୍ଠାନରେ ମୁଖ୍ୟ ଦାୟିତ୍ୱ ତୁଲାଇଥିଲେ ।

ସେ ଥିବା ସବୁ ଅନୁଷ୍ଠାନରେ ମୋତେ ନେଇ ଜବରଦସ୍ତ ସଭ୍ୟ ଓ କର୍ମକର୍ତ୍ତା କରାଇଛନ୍ତି । କେଦାରନାଥ ଗବେଷଣା ପ୍ରତିଷ୍ଠାନରେ ମୋ ପାଇଁ ସଭ୍ୟ ଚାନ୍ଦା ଦେଇ କମିଟିରେ ରହିବାପାଇଁ ବାଧ୍ୟ କରାଇ ରଖିଥିଲେ । ତାଙ୍କ ନିର୍ଦ୍ଦେଶ ମୁଁ ଅବମାନନା କରିପାରେ ନାହିଁ । ବ୍ରାହ୍ମଣ ମହାସଭାର ବାର୍ତ୍ତା ପ୍ରଚାର ପାଇଁ ବୈଠକରେ ମଧ୍ୟ ଦୁଇଥର ବସିଛି । ମୋ ପାଇଁ ତାଙ୍କ ସହ ଦେଖା କରିବକୁ ନିର୍ଦ୍ଦିଷ୍ଟ ସମୟର ଆବଶ୍ୟକତା ଥାଏ । ଆନୁଷ୍ଠାନିକ ବିଷୟ କିମ୍ବା କୌଣସି ମତ ନେବାକୁ ଥିଲେ ଦିନର ଶୋଇବାବେଳେ ହେଉ କି ରାତ୍ରିର ଖାଇବାବେଳେ ମୁଁ ବିନା ଅନୁମତିରେ ସିଧା ତାଙ୍କ ପାଖରେ ପହଞ୍ଚେ ଓ ଆଲୋଚନା କରେ । ସେ ମୋତେ ଭାରି ସ୍ନେହ କରନ୍ତି ଓ ବେଳେବେଳେ ଅଭିମାନ ବି କରନ୍ତି ।

ସେ ଥିଲେ ଜଣେ ଅନୁଷ୍ଠାନ । ତାଙ୍କ ଗାଡ଼ି ଥିଲା ବିଭିନ୍ନ ଅନୁଷ୍ଠାନର ଗାଡ଼ି, ତାଙ୍କ ଅଫିସ୍ ଥିଲା ବିଭିନ୍ନ ଅନୁଷ୍ଠାନର ଅଫିସ୍, ତାଙ୍କ କଥା ଥିଲା ସାମୁହିକ କଥା । ଓଡ଼ିଶାର ଦୁଇଜଣ ବ୍ୟକ୍ତିତ୍ୱ ମୋତେ ସଦାବେଳେ ଗୁଣବାବୁଙ୍କ କଥା ପଚାରନ୍ତି । ସେମାନେ ହେଲେ ସୌମ୍ୟରଂଜନ ପଟ୍ଟନାୟକ ଓ ପ୍ରସାଦ ହରିଚନ୍ଦନ । ଗୁଣବାବୁ ମଧ୍ୟ ତାଙ୍କ କଥା ମୋତେ ପଚାରନ୍ତି ।

ଆଫ୍ରିକାରୁ ଛୁଟିରେ ଆସିଥିବା ଅଧ୍ୟାପକ ଡ଼ଃ ଦେବାଶିଷ ମହାପାତ୍ର ଓ ମୁଁ ସୌମ୍ୟବାବୁଙ୍କୁ ସାକ୍ଷାତ କରିବାକୁ ଯାଇଥିଲୁ । ସୌମ୍ୟବାବୁ ଗୁଣବାବୁଙ୍କ ବିଷୟ ଆମକୁ ପଚାରିଲେ । ସେ ଆମ ଠାରୁ ତାଙ୍କ ବିଷୟ ସୁଣିବା ପରେ ତାଙ୍କ ଜନ୍ମଦିବସ ପାଳନ କରିବା ପାଇଁ କହିଥିଲେ । ସୌମ୍ୟବାବୁ ନିଜେ ସବୁ ଖର୍ଚ୍ଚ କରା **"ଆମ ଓଡ଼ିଶା"** ପକ୍ଷରୁ ବଡ଼ ଧୁମ୍‌ଧାମରେ ବଡ଼ସଭା ଡ଼କାଇ ତାଙ୍କ ଜନ୍ମ ଉତ୍ସବ ପାଳନ କଲେ । ଭାଗୀରଥି ମହାସୁଆର ଓ କେଦାରନାଥ ଗବେଷଣା ପ୍ରତିଷ୍ଠାନ ଏଥିରେ ସହଯୋଗ କରିଥିଲେ । ଉକ୍ତ ଜନ୍ମଦିବସରେ ଗୁଣବାବୁ ତାଙ୍କ ସୁସ୍ଥ ଶରୀରର ରହସ୍ୟ କହିଥିଲେ । ସେ କହିଥିଲେ ମୁଁ ଦୁଇ ବେଳା ନିଶ୍ଚିନ୍ତରେ ଶୁଏ । କାରଣ କାହାରି ଅନିଷ୍ଟ କରିନାହିଁ । ଗୁଣବାବୁ ଯେଉଁ ସୁନାମ ଅର୍ଜ୍ଜନ କରିଯାଇଛନ୍ତି, ସେ ଅମର ହୋଇଯାଇଛନ୍ତି । ତାଙ୍କ ଆତ୍ମା ଅନୁଷ୍ଠାନରେ ଅଛି । ତାଙ୍କ ପରିଶ୍ରମରେ ଗଠିତ ଅନୁଷ୍ଠାନ ଯେ ପର୍ଯ୍ୟନ୍ତ ଥିବ ତାଙ୍କ ଆତ୍ମା ସେ ପର୍ଯ୍ୟନ୍ତ ଥିବ ।

ଜମେଶ୍ୱରପାଟଣା, ପୁରୁଣା ଭୁବନେଶ୍ୱର, ମୋ-୯୪୩୯୨୦୦୩୨୧

# ସ୍ମୃତି ତର୍ପଣ ନୁହେଁ, ଲୋତକାର୍ପଣ

-ରଘୁନାଥ ଦାଶ

ଦିନ ଚାଲିଯାଏ, ଚିହ୍ନ ରହିଯାଏ । ଆଜିର କଥା କାଲିକି ସ୍ମୃତି ପାଲଟିଯାଏ । ଏପରି ଲୋକ କିନ୍ତୁ ଅଛନ୍ତି; ଯାହାଙ୍କର ସ୍ମୃତି ଭୁଲିହୁଏନା । ପୁରୁଣା ଭୁବନେଶ୍ୱରର ନମସ୍ୟ ଗୁଣନିଧି ମହାପାତ୍ରଙ୍କ ସ୍ମୃତି ଯେପରି ଚିର ଜାଜ୍ୱଲ୍ୟମାନ ।

ଏହି ମାନନୀୟଙ୍କ ପାଇଁ କ'ଣ ଲେଖିବି ଆଉ କେଉଁଠୁ ଲେଖିବି ଜାଣି ପାରୁନି । କେଉଁଠୁ ଆରମ୍ଭ କରିବି ଭାବି ବି ପାରୁନି । ଏହି ବ୍ୟକ୍ତିତ୍ୱଙ୍କ କଥା ମନେ ପକାଇଲା ବେଳକୁ ଆଖି ସାମ୍ନାରେ ଝଲସି ଯାଉଛି ରୂପ, ଶୁଭୁଛି ବି ସ୍ୱର ! ଯାହା ଘଟିଗଲା, ତାହା ତ ଅତ୍ୟନ୍ତ ଦୁଃଖଦାୟକ ହେଲେ ମଧ ସତ, ସେ ଦୃଶ୍ୟ ହୃଦୟ ବିଦାରକ । ଅତୀତର ଅନେକ ସ୍ମୃତି ମନ ଭିତରକୁ ଯେତିକି ଯେତିକି ପଶି ଆସୁଛି, ଆପଣଙ୍କ ଅବର୍ତ୍ତମାନ ହେତୁ ସେତିକି ସେତିକି ମନକଷ୍ଟ ହେଉଛି । ସେସବୁ ମନ ଭିତରେ ଆଲୋଡନ ସୃଷ୍ଟି କରୁଛି । ଏବେ ବି ହସ ହସ ମୁଖରେ ଚଳଚଞ୍ଚଳ ଗତିରେ ଯିବା ଆସିବା କରୁଥିବାର ଦୃଶ୍ୟ ଆଖି ଆଗରେ ଭାସି ଯାଉଛି ।

ସୁଦୀର୍ଘ ପଚିଶ ବର୍ଷର ସାମ୍ବାଦିକ ଜୀବନ ମଧରେ ମୁଁ ବହୁ ଗୁଣୀବ୍ୟକ୍ତିଙ୍କ ଘନିଷ୍ଠ ସଂସ୍ପର୍ଶରେ ଆସିଛି । ସେମାନଙ୍କ ପ୍ରେରଣା, ଉତ୍ସାହ ଉପଦେଶ ମୋର ମନ ଓ ମସ୍ତିଷ୍କକୁ କରିଛି ଋଦ୍ଧିମନ୍ତ । ସେମାନଙ୍କ ଆକର୍ଷଣୀୟ ବ୍ୟକ୍ତିତ୍ୱ ମୋ ଅନ୍ତରରେ ଭରି ଦେଇଛି ଅଜସ୍ର ପ୍ରେରଣା । ସାର୍ ଆପଣ ଥିଲେ ସେମାନଙ୍କ ମଧରେ ଅନ୍ୟତମ । ଆପଣ ହିଁ ମୋତେ ଶିଖାଇଥିଲେ, ଜୀବନ ପରିଧିରେ ଯେତେ ବାଧାବିଘ୍ନ ଆସିଲେ ବି ପଛକୁ ଫେରିଯିବା ଉଚିତ୍ ନୁହେଁ କାପୁରୁଷଙ୍କ ପରି, ପରନ୍ତୁ ବୀର ଓ ବୀରଙ୍ଗନା ପରି ଦୁନିଆ ସହିତ ଲଢ଼ିବାକୁ ପଡ଼ିବ । ଏକଥା ଆଜି ବି ମୋ କାନ ପାଖରେ ଗୁଞ୍ଜରିତ ହେଉଛି ବାରମ୍ବାର ।

ସାର୍‌ଙ୍କ ପୁତ୍ରବତ୍ ସ୍ନେହ, ଗୁରୁଙ୍କ ପରି ଆଶୀର୍ବାଦ, ବନ୍ଧୁ ପରି ଉପଦେଶ - ଏସବୁ ବିଗତ ପଚିଶବର୍ଷ ମଧରେ ଯାହା ପାଇଛ, ମୋ ଜୀବନ ଧନ୍ୟ ହୋଇଛି । ପଣ୍ଡିତ ନୀଳମଣି ମିଶ୍ରଙ୍କ ମାଧମରେ ଆପଣଙ୍କ ସହିତ ସାକ୍ଷାତ୍ ସେହି ମୁହୂର୍ତ୍ତରୁ ସଂପର୍କର ଖିଅ ଯୋଡ଼ି ହୋଇଗଲା, ପ୍ରଥମ ସାକ୍ଷାତରୁ ହିଁ ଆତ୍ମୀୟତା ଗଢ଼ି ଉଠିଲା, ଯାହାକି ପରବର୍ତ୍ତୀ ସମୟରେ ନିବିଡ଼ ହୋଇଗଲା । ମୋ ସହ ସାକ୍ଷାତ ମାତ୍ରେ ସ୍ମିତ ହାସ୍ୟ ସହ କୁଶଳତାର ପ୍ରଶ୍ନ ମୋତେ ନିକଟତର କରୁଥିଲା । ଆପଣଙ୍କ ସାହାଯ୍ୟ, ସହଯୋଗ, ସହାନୁଭୂତି, ନୈତିକ ଉତ୍ସାହ ଉଲ୍ଲେଖଯୋଗ୍ୟ । ଆପଣଙ୍କ ସାଦର ନିମନ୍ତ୍ରଣରେ ବିଭିନ୍ନ ସଭା ସମିତି, ବିବାହ, ସାଂସ୍କୃତିକ ଉତ୍ସବରେ ମୁଁ ନିଶ୍ଚୟ ଉପସ୍ଥିତ ରହେ । ପୁରୁଣା ଭୁବନେଶ୍ୱରରେ ମୋତେ ବିଶେଷ ପରିଚୟ ଓ ମାନ୍ୟତା ଦେବାର ସମସ୍ତ ଶ୍ରେୟ ଆପଣଙ୍କର କହିଲେ ଅତ୍ୟୁକ୍ତି ହେବନି । ମୋର ବର୍ତ୍ତମାନଟା ଆଜି ଯେଉଁ ଭଳି ଭାବରେ ଏ ଭୁବନେଶ୍ୱର ଗଢ଼ି ଉଠିଛି, ସେହିପରି ଗଢ଼ି ଉଠିବାରେ ଆପଣଙ୍କ ଅବଦାନ ଯେ ଅନନ୍ୟ, ତାକୁ ସ୍ୱୀକାର କରୁଛି । ଆପଣ ତ' ଥିଲେ ଜଣେ ସରଳ, ଅମାୟିକ, ବିନମ୍ର, ମିଷ୍ଟଭାଷୀ ଓ ହସ ମୁଖ ମଣିଷଟିଏ । କେବେ କେବେ ଘରକୁ ଗଲେ ଆପଣ ଅତ୍ୟନ୍ତ ଖୁସି ହୋଇ ପଡୁଥିଲେ । ବାରଣ କରିବା ସତ୍ତ୍ୱେ 'ଚା' କିମ୍ବା 'ସରବତ' ପାଇଁ ଡ଼ାକ ପକାଉଥିଲେ ।

ଦେହ କେମିତି ଅଛି ପଚାରିଲେ କହୁଥିଲେ - 'ହଁ ମୋ କଥା ଛାଡ଼, ଆମର ତ ଜୀବନକାଳ ଗଲାଣି । ଆଉ କେତେ ଦିନ ? ଚାଲିଛି...ଚାଲୁ । ଭଗବାନଙ୍କ ଇଚ୍ଛା ' । 'ତଥାପି ତ ମଉଳି ନଥିଲା ସାର୍‌ଙ୍କ ଅମଳିନ ହସ । ଯେବେ ଦେଖା ହେଲେ ସେ ପଚାରନ୍ତି - ସାମ୍ବାଦିକତା ଠିକ୍ ଠାକ୍ ଚାଲିଛି ତ ? ଆମ ଖବର ସବୁ ବାହାରୁଛି ତ ? ବିବାହ କଲେଣି ହୋଟେଲରେ ଖାଉଥିବ । ଦେହ ପ'ାକୁ ଜଗିରଖି ଚଳ । କିନ୍ତୁ ଅସୁବିଧା ହେଲେ କହିବ । ଘରକୁ ଆସିବ । ଶ୍ରୀଲିଙ୍ଗରାଜ ଅଛନ୍ତି । ସେ ଅସୁବିଧା ତୁମର କରିବେନି ।'

ସାଧାସିଧା ମଣିଷଟିଏ ଥିଲେ ଆପଣ । ପୋଷାକ କହିଲେ ଧୋତି ଓ ପଞ୍ଜାବୀ । ଏଥିପାଇଁ ଆପଣ ସବୁ ସ୍ଥଳରେ ବାରି ହୋଇ ପଡ଼ନ୍ତି । ସାଧାରଣ ବ୍ୟକ୍ତିଙ୍କଠାରୁ ବ୍ୟକ୍ତିତ୍ୱ ଆପଣଙ୍କର ଥିଲା ସଂପୂର୍ଣ୍ଣ ନିଆରା । ପାକୁଆ ପାଟିରେ ହସ ଚେନାଏ ସଭିଁଙ୍କୁ ଆପଣାର କରି ଦେଉଥିଲା । ସାର୍ ଥିଲେ ହୃଦୟବାନ, ଉଦାର ଓ ଦୂରଦର୍ଶୀ । ଆପଣ ଥିଲେ ପ୍ରେରଣାର ଉତ୍ସ । ଆପଣ ବି ଥିଲେ ମୁରବୀ । ପ୍ରତ୍ୟେକ ସାହିବିବାଦ, ମନ୍ଦିର, ପାରିବାରିକ ବିବାଦ, ଜମିବାଡ଼ି ଗଣ୍ଡଗୋଳ, ସମସ୍ତ କାର୍ଯ୍ୟରେ ସମସ୍ତେ ଖୋଜୁଥିଲେ ସାର୍‌ଙ୍କୁ । ରାଜନୀତିରେ ରହି ଏଭଳି ସ୍ନେହୀ, ନିସ୍ୱାର୍ଥପର ବ୍ୟକ୍ତି କ୍ୱଚିତ ଦେଖିବାକୁ ମିଳନ୍ତି । ସଭାସମିତି, ଖେଳ କସରତ, ଭଜନ, ପ୍ରତିକ୍ଷେତ୍ରରେ ସାର୍‌ଙ୍କ ଅବଦାନ ଅବିସ୍ମରଣୀୟ । ପ୍ରତ୍ୟେକ ଧାର୍ମିକ ଓ ସାମାଜିକ କାର୍ଯ୍ୟ ପାଇଁ ଆପଣ ଡ଼କରା ପାଉଥିଲେ । ଆପଣଙ୍କ ଜୀବନର ଅନନ୍ୟ ଦିଗ ହେଲା, ନିଜ ଜୀବନ କାଳରେ ହବୁ ବଳିଷ୍ଠ ବ୍ୟକ୍ତିଙ୍କ ସାନ୍ନିଧ ଲାଭ କରିବାର ଗୌରବ ଅର୍ଜନ କରିଥିଲେ । ସାଂସ୍କୃତିକ ବିକାଶ କ୍ଷେତ୍ରରେ ଆପଣ ଥିଲେ ଜଣାଶୁଣା ବ୍ୟକ୍ତିତ୍ୱ । ଆପଣ ବି ଥିଲେ ସଂଗଠକ ବିକାଶ କ୍ଷେତ୍ରରେ ଜଣାଶୁଣା । ଆପଣ ବି ଥିଲେ ସାହିତ୍ୟ ସଂସ୍କୃତିର ସଂଗଠକ । ଅନେକ ଅନୁଷ୍ଠାନ ଆପଣଙ୍କର ସ୍ୱୀକୃତିକୁ ସମ୍ମାନ ଦେଇଛି । ଆପଣଙ୍କର ପ୍ରଚେଷ୍ଟାରେ ଅଞ୍ଚଳରେ ଗଢ଼ି ଉଠିଛି ଅନେକ ଅନୁଷ୍ଠାନ । ସେ କ୍ରୀଡ଼ା ହେଉ କି ଶିକ୍ଷାନୁଷ୍ଠାନ ହେଉ । ଅଞ୍ଚଳର ପ୍ରତ୍ୟେକ ଅନୁଷ୍ଠାନ ସହିତ ଆପଣଙ୍କ ସଂପୃକ୍ତି ଥିଲା । ଆପଣ ଥିଲେ ଶିଶୁବତ୍ସଳ । ଶିଶୁମାନଙ୍କ ପ୍ରତି ଆପଣଙ୍କ ଥିଲା ଅହେତୁକ ସ୍ନେହ, ଅନାବିଳ ପ୍ରେମ । ସଭା ସମିତିରେ ଶିଶୁମାନଙ୍କୁ ଦେଖିଲେ ଆପଣ ଖୁବ୍ ଖୁସି ହେଉଥିଲେ । ମୁଁ ଜାଣିବାରେ ଆପଣଙ୍କର କେହି ଶତ୍ରୁ ନଥିଲେ ।

ବାର୍ଦ୍ଧକ୍ୟ ସତ୍ତ୍ୱେ ଭରି ରହିଥିଲା ପ୍ରଚଣ୍ଡ ସାହସ ଓ ଅଦୃଶ୍ୟ ଉଦ୍‌ଯୋଗ । ଇଚ୍ଛାଶକ୍ତି ଆପଣଙ୍କୁ ପ୍ରାଣବନ୍ତ ଓ ଶକ୍ତିମାନ କରି ରଖିଥିଲା ସମଗ୍ର ଜୀବନ କାଳ । ସ୍ୱାଭାବିକତା ବଜାୟ ରଖି ଯେ କୌଣସି ସାରସ୍ୱତ ସଭା, ସମିତି, ମହୋତ୍ସବ, ଆଲୋଚନା ଚକ୍ର, ପୂଜା, ପାର୍ବଣ, କର୍ମଶାଳାକୁ ଆଗ ପହଞ୍ଚି ଯାଉଥିଲେ । ଚଳଚଞ୍ଚଳ କର୍ମଯୋଗୀ ଭାବେ ଜୀବନରେ ଶେଷପର୍ଯ୍ୟନ୍ତ କେବେ ବିଶ୍ରାମ ନେଇ ନ ଥିଲେ ।

ସଂସାରର ନିୟମ ମାନି ସାର୍ , ଆପଣତ' ଚାଲିଗଲେ, କିନ୍ତୁ ଛାଡ଼ିଦେଇ ଯାଇଛନ୍ତି ଆମପାଇଁ ଅନେକ ପଦଚିହ୍ନ । ସେ ସବୁ ଭୁଲିବାର ନୁହେଁ । ଆପଣ ଚିରସ୍ମରଣୀୟ ହୋଇ ରହିବେ । ଆପଣ ଯେଉଁ ଶୂନ୍ୟସ୍ଥାନଟି ଛାଡ଼ି ଦେଇ ଗଲେ ତାହା ସହଜରେ ପୂରଣ ହୋଇପାରିବନି । ମାତ୍ର ଆପଣଙ୍କ ସଦ୍‌ଗୁଣ, ସଦ୍‌ଭାବ, ଦୃଢ଼ ଇଚ୍ଛାଶକ୍ତି ଆମକୁ ସର୍ବଦା ପ୍ରେରଣା ଦେଉଥିବ ।

ଲୁହ କୋହର ପୃଥିବୀଠାରୁ ତ ଆପଣ ଆଜି ବହୁତ ଦୂରରେ । ପୁଣି କେବେ ଦେଖା ? କୋଉ ଜନ୍ମରେ କୋଉ ଯୁଗରେ ? ? ଆପଣଙ୍କ ଅଭାବନୀୟ ଅକାଳ ବିୟୋଗରେ ଏ ମୋର ସ୍ମୃତି ତର୍ପଣ ନୁହେଁ ଲୋତକାର୍ପଣ ।

ଆପଣଙ୍କୁ ମୋର କୋଟି କୋଟି ପ୍ରଣାମ । ସାମ୍ବାଦିକ

ସାମ୍ବାଦିକ

ପୁରୁଣା ଭୁବନେଶ୍ୱର

# କୀର୍ତ୍ତିଧନ୍ୟ ଗୁଣନିଧି ବାବୁ

**-ନୃସିଂହ ଚରଣ ସାହୁ**

ପରିଣତ ବୟସ (୯୦ବର୍ଷ)ରେ ତରୁଣଙ୍କ ଭଳି ଚଳଚଞ୍ଚଳ ଥିବା ଗୁଣନିଧି ବାବୁ ଯେ ହଠାତ୍ ଏପରି ଦୂର ଦିଗ୍‌ବଳୟରେ ବିଲୀନ ହୋଇ ଆକାଶର ତାରା ପାଲଟି ଯିବେ, କେବେ କଳ୍ପନା କରି ନଥିଲୁ । ତାଙ୍କର ପ୍ରତ୍ୟେକ କାର୍ଯ୍ୟରେ ଅଦ୍ୟାପି ଯୁବସୁଲଭ ଉଦ୍ଦାମତା ଆମ୍ଭମାନଙ୍କୁ ସବୁବେଳେ ଆଶ୍ଚର୍ଯ୍ୟାନ୍ୱିତ କରିଥାଏ । କେଦାରନାଥ ଗବେଷଣା ପ୍ରତିଷ୍ଠାନ କେବଳ କାହିଁକି, ଭୁବନେଶ୍ୱରରେ ବହୁ ସାଂସ୍କୃତିକ ଅନୁଷ୍ଠାନର ଉତ୍ସବାଦିରେ ତାଙ୍କୁ ଦର୍ଶନ କରି ଟିକିଏ ଆଶୀର୍ବାଦ ଲାଭ କଲେ ମନରେ ସ୍ୱତଃ ଏକ ଦିବ୍ୟଭାବ ସଞ୍ଚରି ଯାଏ ।

ସେ ତାଙ୍କର ଅଗ୍ରଜ ଐତିହାସିକ କେଦାରନାଥ ମହାପାତ୍ର ସଦୃଶ ଜ୍ଞାନର ଗନ୍ତାଘର ନଥିଲେ, ମାତ୍ର ତାଙ୍କର ଗଭୀର ମାନବିକତା ଅତୁଳନୀୟ ଥିଲା । ସବୁବେଳେ ସେ ଅନ୍ୟର ଉପକାର ପାଇଁ ତତ୍ପର ଥିଲେ ଏବଂ ସେଥିରୁ ଅପାର ଆନନ୍ଦ ଲାଭ କରୁଥିଲେ । ଅସୁବିଧାରେ ପଡ଼ିଥିବା ଲୋକକୁ ସାହାଯ୍ୟ କରିବା ସତେ ଯେପରି ତାଙ୍କ ଜୀବନର ବ୍ରତ ପାଲଟି ଯାଇଥିଲା । ଯେତେବେଳେ ସେ ନିଜେ କିଛି ସାହାଯ୍ୟ କରିପାରିବା ଅବସ୍ଥାରେ ନଥାନ୍ତି, ତାଙ୍କଠାରୁ ସାତସାନମାନଙ୍କୁ ମଧ୍ୟ ଚିଠି ଲେଖି ସାହାଯ୍ୟ ଚାହୁଁଥିବା ବ୍ୟକ୍ତିଙ୍କୁ ପଠାଇଦିଅନ୍ତି । ଦିନେ ଏକଥା ପ୍ରତି ମୁଁ ତାଙ୍କର ଦୃଷ୍ଟି ଆକର୍ଷଣ କଲାବେଳେ ସଂଗେ ସଂଗେ ଦୁଇ ହାତ ଯୋଡ଼ି ମୁଣ୍ଡରେ ଲଗାଇ କହିଲେ - "ଗୁରୁଦେବ (ଡ଼କ୍ଟର ହରେକୃଷ୍ଣ ମହତାବ) ଙ୍କ ତାଲିମ । ଆପଣ ସିନା ତାଙ୍କର ଶିଷ୍ୟ ତାଲିକାରେ ପରେ ସାମିଲ ହେଲେ, ଆମେ ସବୁ ପିଲାବଳୁ ।" ଅନେକ ଥର ତାଙ୍କ ସହ ଦେଖା ହୋଇଛି ଏକାମ୍ର ନିବାସରେ, ବିଶେଷ କରି ନଭେମ୍ବର ୨୧ ତାରିଖ ମହତାବଙ୍କ ଜନ୍ମ ଜୟନ୍ତୀରେ । ଯେତେବେଳେ ମୋ (ସେମାନଙ୍କର ମୁଖ୍ୟ ସଞ୍ଚାଳକ ଜହୁରୀ ଭାଇ, ନୃସିଂହ ଜରଣ ସାହୁ) ସହ ହଜାର ହଜାର ମୀନାବଜାର ପିଲା 'କକା ମହତାବ ଜିନ୍ଦାବାଦ୍" ଧ୍ୱନି ଦେଇ ଭୁବନେଶ୍ୱର ରାଜରାସ୍ତା ପ୍ରକମ୍ପିତ କରି ଏକାମ୍ର ନିବାସରେ ଗହଳି ଜମାଉଥିଲେ, ଗାଉଥିଲେ, ନାଚୁଥିଲେ, ସେମାନଙ୍କ ମଧ୍ୟରୁ କେତେ ଯେ ଆଜି ସମାଜର ବିଭିନ୍ନ କ୍ଷେତ୍ରରେ ଉଚ୍ଚ ପଦାସୀନ, ସଂଖ୍ୟା କଳନା କରାଯାଇ ପାରିବ ନାହିଁ ।

ମହତାବ ବାବୁ ତ ଅନେକ ଲୋକଙ୍କୁ ସାହାଯ୍ୟ କରିଛନ୍ତି ; ଏକଥା ସମସ୍ତେ ଜାଣନ୍ତି । କିନ୍ତୁ ତାଙ୍କ ଦୁର୍ଦ୍ଦିନରେ ଯେଉଁ ମୁଷ୍ଟିମେୟ ବ୍ୟକ୍ତି ନିଜ ସାମର୍ଥ୍ୟ ଅନୁସାରେ ଅଯାଚିତ ଭାବେ ଋଣ ପରିଶୋଧ କରିବାକୁ ମହତାବଙ୍କ ପାଖରେ ପହଞ୍ଚି ଯାଉଥିଲେ, ସେମାନଙ୍କ ମଧ୍ୟରେ ଗୁଣନିଧିବାବୁ ଥିଲେ ଅନ୍ୟତମ । ଜଣେ ସାଧାରଣ କୃଷିବିଭାଗି କର୍ମୀ ଭାବେ ଜୀବନ ଆରମ୍ଭ କରି ସେ ବି.ଡ଼ି.ଓ,ପଦବୀ ପର୍ଯ୍ୟନ୍ତ ଉନ୍ନୀତ ହୋଇଥିଲେ । ମାତ୍ର ତାହା ତାଙ୍କର ପରିଚୟ ନଥିଲା । ଭୁବନେଶ୍ୱର ନଗରପାଳିକାର ପ୍ରଥମ ଅଧ୍ୟକ୍ଷ ରୂପେ ନିର୍ବାଚିତ ହୋଇ ବିଭିନ୍ନ ଜୀର୍ଣ୍ଣ ମନ୍ଦିର ତଥା ପ୍ରାଚୀନ ପୁଷ୍କରିଣୀର ସଂସ୍କାର ସାଧନ କରି ସେଗୁଡ଼ିକୁ ସେ ପର୍ଯ୍ୟଟନ ସ୍ଥଳୀରେ ପରିଣତ କରି ପାରିଥିଲେ । ତାଙ୍କରି ଉଦ୍ୟମରେ ଲିଙ୍ଗରାଜ ମନ୍ଦିର ଓ କପିଳେଶ୍ୱର ମନ୍ଦିରରେ ସେବାପୂଜାର ସୁପରିଚାଳନା, ଯାତ୍ରୀ ଧର୍ମଶାଳା, ଏକାମ୍ର କଲେଜ ଓ ବିନ୍ଦୁସାଗର ପୁଷ୍କରିଣୀର ଉନ୍ନତି ସାଧନ କେତୋଟି ସ୍ମରଣୀୟ କୃତି ।

ହଠାତ ତାଙ୍କର ଅବର୍ତ୍ତମାନରେ ମନେ ହୁଏ, ଆମ ମୁଣ୍ଡ ଉପରୁ ଆଶୀର୍ବାଦର ହସ୍ତଟିଏ ଅନ୍ତର୍ହିତ ହୋଇଗଲା । ଧିରେ ଧିରେ ମହତାବଙ୍କ ସ୍ନେହଧନ୍ୟ, ଅଣରାଜନୈତିକ ସମାଜସେବୀ ବ୍ୟକ୍ତିବିଶେଷଙ୍କ ସଂଖ୍ୟା କମି ଆସୁଥିବାବେଳେ ଗୁଣନିଧି ବାବୁଙ୍କ ସ୍ୱର୍ଗାରୋହଣ ନିଶ୍ଚୟ ମହତାବ - ପରିବାରର ପ୍ରତ୍ୟେକ ସଦସ୍ୟଙ୍କ ପାଇଁ ବ୍ୟକ୍ତିଗତ କ୍ଷତି । ସେ ଶୂନ୍ୟସ୍ଥାନ ସହଜରେ ପୂରଣ ହେବାର ନୁହେଁ ।

**ସଂପାଦକ ଡ଼କ୍ଟର ହରେକୃଷ୍ଣ ମହତାବ ଫାଉଣ୍ଡେସନ**

# Loss of an endeared personality

-Gopal Prasad Pattnaik

Some people are born to be loved by all. Guna Mousa was one such personability. After my marriage I was introduced to him by my father-in-law Late Durga Prasanna Pattnaik. Both of them were very much intimate, probably because of similar wave length. Gunanidhi Mohapatra was very popular in Old Town as he possessed multifaceted qualities and made a lot of selfless efforts for the development of Old Bhubaneswar. During his life span of nine decades he devoted major parts towards the improvement of Lingraj temple, Literary activities, Sports & Cultural activities and actively participated in Municipality administration along with tourism development.

He was endeared by all irrespective of political affiliations due to his humility and down-to-earth attitude. It was heartening to experience his patience to face any challenge with a smile, which was the hallmark of his character and rarity in to-day's world.

We pray the almightily to bless his soul to rest in peace and give courage to his family members to endure the tragedy.

Plot No. 3537, Sriram Nagar Bhubaneswar - 2

# ସମ୍ମୁଧିଙ୍କ ସମ୍ମୁଧି

-ହରିହର ମିଶ୍ର

ପରିଚୟ ସୀମିତ । ସଂପର୍କ ମଧ୍ୟ ସେହିପରି । ଆଳାପ ସ୍ୱଳ୍ପ । ତଥାପି ସଂବାଦଟି ଚହଲେଇଦିଏ । ତ୍ରିସ୍ରୋତା ଜାହ୍ନବୀ ଦୁଇକୂଳକୁ ଛୁଇଁ ଚାଲିଥାଏ, ସେ ଯାତ୍ରାର ଆଦିଅନ୍ତକୁ ଜୀବନ ନାଁ ଦେଇ ବ୍ୟାଖ୍ୟା କରାଯାଏ, ଆଲୋଚନା କରାଯାଏ । ଆମେ ସେତିକିର ମଣିଷ । ତାହାର ପୂର୍ବ ଓ ପର ସମ୍ବନ୍ଧରେ ଜ୍ଞାନ ନାହିଁ । ଦ୍ରଷ୍ଟାମାନେ ନୀରବ । ସ୍ରଷ୍ଟା ତ' ସବୁବେଳେ ପ୍ରଚ୍ଛଦର ନାୟକ । ଏହିଭଳି ଏକ ପୃଷ୍ଠଭୂମିରେ ତାଙ୍କର ଆବିର୍ଭାବ ଓ ତିରୋଧାନ । ସେ ଉତ୍ସବମୟ ପୁରୁଷ । ନିତ୍ୟରେ ଅଧିଷ୍ଠିତ, କିନ୍ତୁ ବର୍ତ୍ତମାନସର୍ବସ୍ୱ ନୁହଁନ୍ତି । ଯେତେବେଳେ ଯେଉଁଠି ଯେମିତି ଦେଖ, ତାଙ୍କ ସହିତ ଉତ୍ସବଟିଏ ଯୋଡ଼ି ହୋଇଥାଏ । ସାଧାରଣଜୀବନ ଭିତରେ ଅସାଧାରଣଟି କରି ହୋଇଯାଏ । ତ୍ରିସ୍ରୋତା ଜାହ୍ନବୀର ଗୋଟିଏ କୂଳରେ ପରା ଆଧାତ୍ମିକ, ଶାଶ୍ୱତ କାଶୀ, ଅନ୍ୟ କୂଳରେ ଅପରା ଜ୍ଞାନର ପ୍ରତୀକ ବାରାଣାସୀ ।

ସେହିପରି ହୁଗୁଳିର ଏପଟସେପଟ । ଆଉ ଟିକିଏ ନିକଟକୁ ଆସିଲେ ପୁରୁଣା ଭୁବନେଶ୍ୱର, ମନ୍ଦିରମାଳିନୀ ଶୈବ କ୍ଷେତ୍ର । ଅନ୍ୟଟି ମହାନଗର, ଆଧୁନିକତାର ଶୀର୍ଷକୁ ଛୁଇଁବାର ଆସ୍ପର୍ଦ୍ଧା । ସେହି ଦୁଇଟି କୂଳ ଛୁଇଁ ତାଙ୍କ ସ୍ରୋତସ୍ୱିନୀ ଜୀବନର ସ୍ପର୍ଶକ । ଉଭୟକୁ ସମାନ ଭାବରେ, ସମାନ ଦୃଷ୍ଟିରେ ଦେଖୁଅଛନ୍ତି । କୌଣସିଟି ଅନ୍ୟଟିକୁ ଊଣା କରିନାହିଁ । ସେହି ପ୍ରବହମାନ ଜୀବନର ପ୍ରତିଟି ବିନ୍ଦୁ ସତେ ଯେମିତି ସାଗର, ସେଥିପାଇଁ ବୋଧହୁଏ ବିନ୍ଦୁସାଗର ତାଙ୍କର ଅନ୍ତ୍ୟେଷ୍ଟିର ପରିପୂର୍ଣ୍ଣ ପ୍ରକାଶର ଅପ୍ରକାଶିତ ସ୍ୱରୂପକୁ ସାଦର ନିମନ୍ତ୍ରଣ କରିଛି । ତାଙ୍କର ଅବର୍ତ୍ତମାନ ଯେପରି ଅନ୍ତଃସଲୀଳା ସରସ୍ୱତୀ ପାର୍ଥିବ ରୂପକଳ୍ପରେ ଲୁପ୍ତ । କିନ୍ତୁ ତାଙ୍କର ଅନୁଷ୍ଠାନ ଓ ବ୍ୟକ୍ତିତ୍ୱ ଓତଃପ୍ରୋତ ଭାବରେ ସନ୍ତୁଳିତ ସତ୍ତାର ପୋଷାକ- ରିମୋଟ୍ ସେନ୍ସର - ।

ଏହିପରି ଏକ ସରଳ, ନିଷ୍କପଟ, ଅମାୟିକ ସ୍ପନ୍ଦନର ସ୍ଫୁଲିଙ୍ଗ ଗୁଣନିଧିଙ୍କୁ ପ୍ରଣାମ । କବିଙ୍କ ଭାଷାରେ, "ମରିବାକୁ ଫୁଟି ନାହିଁ ଭବ ତରୁ ଡାଳରେ" ।

# ଧନ୍ୟ ଗୁଣଅଜା, ଧନ୍ୟ ତୁମର ଜୀବନ

-ଚିତ୍ତରଂଜନ ମଲିଆ

କେବଳ ପୁରୁଣା ଭୁବନେଶ୍ୱର ନୁହେଁ, ଆଖପାଖ ଅଞ୍ଚଳରେ ଯେତୋଟି ଗାଁ ଅଛି ସବୁଠାରେ ସେ ସୁପରିଚିତ । କାହା ପାଖରେ ଗୁଣବାବୁ ଓ ଆଉ କାହା ପାଖରେ ଗୁଣ ବୈଦ୍ୟ ଏବଂ କାହା ପାଖରେ ଗୁଣନିଧି ମହାପାତ୍ର । କିନ୍ତୁ ଆମ ଗାଁ କପିଳେଶ୍ୱରରେ ତାଙ୍କର ସ୍ୱତନ୍ତ୍ର ପରିଚୟ । କାରଣ, ତାଙ୍କର ଭଉଣୀ ଏ ଗାଁର ବୋହୂ ଏବଂ ଭଣଜାମାନେ ସବୁ ନିଜ ନିଜ ଜାଗାରେ ପ୍ରତିଷ୍ଠିତ । ଯେହେତୁ ମୋ ବାପାଙ୍କୁ (ପୂର୍ଣ୍ଣଚନ୍ଦ୍ର ମଲିଆ) ସେ ଭଣଜା ବୋଲି ଗ୍ରହଣ କରିଛନ୍ତି, ସେ ହିସାବରେ ମୋତେ ନାତି ଭାବରେ ଦେଖନ୍ତି । ମୁଁ ମଧ ତାଙ୍କୁ ଗୁଣଅଜା ବୋଲି ସମ୍ବୋଧନ କରେ । ଏହି ସଂପର୍କ ହେତୁ କଥାବାର୍ତ୍ତା ଭିତରେ ଟିକିଏ ଥଟ୍ଟା ତାମସା ହୁଏ । ଭାରି ଖୁସି ହୋଇ ବେଳେ ବେଳେ କହନ୍ତି, ଯାହା ହେଉ ଆମ ଅଞ୍ଚଳର ଗୋଟିଏ ପିଲା ଇତିହାସ ଚର୍ଚ୍ଚା, କଳା ,ସଂସ୍କୃତି, ନୃତ୍ୟ ସଂଗୀତର ଗବେଷଣା ତଥା ସାଂଗଠନିକ କାର୍ଯ୍ୟରେ ଦକ୍ଷତା ସହିତ ଲେଖାପଢ଼ା ଇତ୍ୟାଦି କରି ରାଜ୍ୟ ତଥା ରାଜ୍ୟ ବାହାରେ ନାଁ ରଖିଲାଣି । ଏହା ଆମ ପାଇଁ ଗୌରବର କଥା । କେଦାରନାଥ ଗବେଷଣା ପ୍ରତିଷ୍ଠାନରେ ଆୟୋଜିତ ହେଉଥିବା ଅନେକ କାର୍ଯ୍ୟକ୍ରମ, ବିଶେଷ କରି ଆଲୋଚନା ଚକ୍ର ଓ ସାଂସ୍କୃତିକ କାର୍ଯ୍ୟକ୍ରମରେ ମୋତେ ସେ ଯେମିତି ହେଉ ସାମିଲ୍ କରିବେ । ଦୁଇ ଭାଗୀ ଭାଇନା (ଭାଗୀରଥି ମହାପାତ୍ର ଓ ଭାଗୀରଥି ମହାସୁଆର) ଙ୍କ ସ୍ନେହ ଆଦର ସହିତ ଗୁଣଅଜାଙ୍କର ଯେଉଁ ଆନ୍ତରିକତା, ତାହା ମୋତେ ପ୍ରଭାବିତ କରିଥାଏ ଏବଂ ମୁଁ ପ୍ରାୟ କାର୍ଯ୍ୟକ୍ରମରେ ଯୋଗ ଦେଇଥାଏ । ବେଳେବେଳେ କହନ୍ତି, ଚିତ୍ତ, ତୁ ତ' ଜାଣିଛୁ ଆମମାନଙ୍କର ସବୁ ବେଳ ସରି ଆସୁଛି । କେତେବେଳେ କ'ଣ ହେବ କିଏ କହିବ ? ତୁମେମାନେ ସବୁ ଏହି ଗବେଷଣା ପ୍ରତିଷ୍ଠାନର ଉନ୍ନତି କଥା ଚିନ୍ତା କରିବ ।" ସତରେ କ'ଣ ଏହି ଉକ୍ତିଟି ଏତେ ଶୀଘ୍ର ସତ ପ୍ରମାଣିତ ହୋଇଗଲା ? ପୁରୁଣା ଭୁବନେଶ୍ୱରର ମୁରବୀ ସେ । ଘରେ ଘରେ ତାଙ୍କର ଆଦର । ଭଲମନ୍ଦରେ ସମସ୍ତେ ତାଙ୍କର ପରାମର୍ଶ ଲୋଡ଼ନ୍ତି । ଲୋକମାନେ ତାଙ୍କର ଅନୁପସ୍ଥିତି ନିଶ୍ଚିତ ଭାବରେ ଅନୁଭବ କରିବେ । 'ଜାତସ୍ୟ ହି ଧ୍ରୁବ ମୃତ୍ୟୁ'-ଏହା ସତ୍ୟ ଏବଂ ଚିରନ୍ତନ । କିନ୍ତୁ ସନ୍ଥ କବୀରଙ୍କ ଭାଷାରେ ଆମେ ଯେତେବେଳେ ଜନ୍ମ ହେଉ ଆମେ କାନ୍ଦିଥାଉ, କିନ୍ତୁ ପରିବାରର ସମସ୍ତେ ଆନନ୍ଦିତ ହୋଇଥାନ୍ତି । ଆମେ କିନ୍ତୁ ହସି ହସି ମରିବା ଓ ଆମର କାର୍ଯ୍ୟ ପାଇଁ ଲୋକମାନେ ଆମକୁ ମନେପକାଇବେ ଏବଂ ଅମର ମୃତ୍ୟୁରେ କାନ୍ଦିବେ । ଏହା ଗୁଣଅଜାଙ୍କ ସଂପର୍କରେ ଶତପ୍ରତିଶତ ପ୍ରମାଣିତ । ଭୁବନେଶ୍ୱରର ଯାବତୀୟ କାର୍ଯ୍ୟରେ ଲୋକମାନେ ତାଙ୍କର ଅଭାବ ଅନୁଭବ କରିବେ । ତାଙ୍କର ଦେବଦୀପ୍ତ ଚେହେରା ଆମେ ଆଉ ଦେଖିବାକୁ ପାଇବା ନାହିଁ । କିନ୍ତୁ ତାଙ୍କର ଜୀବନୀ ଓ କାର୍ଯ୍ୟାବଳୀ ଆମର ମାର୍ଗଦର୍ଶକ ହେବ । ଧନ୍ୟ ଗୁଣଅଜା ।

**ସଚିବ, ଓଡ଼ିଶା ସଂଗୀତ ନାଟକ ଏକାଡେମୀ, ଭୁବନେଶ୍ୱର**



ରାଜ୍ୟପାଳ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ସହ ଏକ ବିଶେଷ ମୂହୁର୍ତ୍ତ




ଗୋକର୍ଣ୍ଣେଶ୍ୱର ମହିଳା କଲେଜ ଶିଳାନ୍ୟାସ




କେଦାରନାଥ ଗବେଷଣା ପ୍ରତିଷ୍ଠାନର ସହକର୍ମୀଙ୍କ ସହ ବଣଭୋଜି



# ବ୍ରାହ୍ମଣ ମହାସଭା ସମ୍ମିଳନୀ



ଭୁବନେଶ୍ୱରରେ




ହାଇଦ୍ରାବାଦରେ

## ଗୁଣନିଧି କପ୍ ଫୁଟ୍‌ବଲ ଟୁର୍ଣ୍ଣାମେଣ୍ଟର କିଛି ଝଲକ



୧




୨

# ମୋ ନନା



-ରବି

୨୪.୦୫.୨୦୧୨ ଦିନଟି ମୋ ପାଇଁ ସବୁଠାରୁ ଅଶୁଭ ଦିନ ଥିଲା । ନନା କାହିଁକି ପଡ଼ିଲେ ମୁଁ ଜାଣିନି । ଭଗବାନ ବୋଧହୁଏ ପୂର୍ବରୁ ସୂଚାଇ ଦେଲେ । କିଛି ମୁଁ ଜାଣି ପାରିନି । ନନାଙ୍କୁ ଭଲ କରିବା ପାଇଁ ମୁଁ ଠାକୁରଙ୍କୁ ବହୁତ ଡାକିଛି, ହେଲେ ବିଧିର ବିଧାନ ଅଲଗା ଥିଲା । ମୋର ଜାଣିବାଠୁ ଆଜି ପର୍ଯ୍ୟନ୍ତ ମୋର ବ୍ୟବସାୟଠୁ ଆରମ୍ଭକରି ଘରୋଇ କାର୍ଯ୍ୟ ଯାଏ ପ୍ରତି ମୁହୂର୍ତ୍ତରେ ତାଙ୍କ ମୁହଁ ଦେଖା ଯାଉଛି । ମତେ ସିଏ ବହୁତ ଭଲପା'ନ୍ତି ତାଙ୍କ ପ୍ରାଣ ଥିଲା ପର୍ଯ୍ୟନ୍ତ । ନନାଙ୍କ ବିଷୟରେ କ'ଣ ଅଧିକା ଲେଖିବି । ତାଙ୍କ ବିଷୟରେ ସମସ୍ତଙ୍କୁ ଜଣା । ନନା ମତେ ସବୁଦିନ ପାଇଁ ଏକୁଟିଆ କରି ଛାଡି ଗଲେ । କ'ଣ କରିବି ଭାବିଲେ ଦୁଃଖ ଲାଗୁଛି । ଏତେ ଦାୟିତ୍ୱ ନେଇ ତଥାପି ତାଙ୍କ ଆଶା ପୂରଣ କରିବାକୁ ଚେଷ୍ଟା କରିବି । ଠାକୁରଙ୍କୁ ଡାକୁଛି ନନାଙ୍କ ଆତ୍ମାକୁ ସନ୍ତୁଷ୍ଟ କରନ୍ତୁ ।



# ନନା



-ରତନୀ

ତମେ ଆମକୁ ହଠାତ୍ ଛାଡ଼ି ଏତେ ଶୀଘ୍ର ଚାଲିଯିବ ଆମେ ଏକଥା ସହଜରେ ଗ୍ରହଣ କରି ପାରୁନାହୁଁ । ସବୁବେଳେ ସବୁଠାରେ ସବୁ ସମୟରେ ତମର ସେହି ହସହସ ମୁହଁ ଆମ ଆଖି ଆଗରେ ନାଚିଯାଉଛି, ଆଉ ରତନ ରତନ ଡାକ ତମ ପାଟିରୁ ମୁଁ ଶୁଣି ପାରିବି ନାହିଁ ।

ତମେ ଜୀବନରେ ସବୁବେଳେ ମୋତେ ଛାଇ ଭଳି ଘୋଡ଼ାଇ ରଖିଥିଲ । ମୁଁ ଆଉ କାହା ପାଖରେ ମୋର ଦୁଃଖସୁଖ ବାଣ୍ଟିବି ? ମତେ ସବୁବେଳେ କହୁଥିଲ ମୋର ଦୁଇଟା ଯାକ ଆଖିରୁ ଗୋଟିଏ ତୋର ଓ ଆରଟି ରବିର ।

ହସ୍ପିଟାଲ୍‌ରେ ଥାଇ ତମେ ମତେ ଆଉସି କହୁଥିଲ, 'ତୁ ଜୀବନରେ କେତେ ଦୁଃଖ ସହିଛୁ ।' ତମେ କେତେବେଳେ ବି ତମର ଦୁଃଖ ଓ କଷ୍ଟ ମତେ ଜଣାଇ ନାହଁ । ତମେ ମୋ ମୁଣ୍ଡ ଉପରେ ଯେଉଁ ଶେଷ ଆଶୀର୍ବାଦ ଡାକ୍ତରଖାନାରେ ଦେଇଛ ତାହା ମୋତେ ଜୀବନର ଚଲାପଥରେ ଆଗେଇ ନେଇଯାଉ ।

ଏତିକି ଭଗବାନଙ୍କ ନିକଟରେ ପ୍ରାର୍ଥନା ଯେ ତମେ ପୁଣି ଆର ଜନ୍ମରେ ମୋତେ ଝିଅ ହେବାର ସୁଯୋଗ ଦେବ । ଆଉ କିଛି ଲେଖିଲା ବେଳକୁ ମୋର ଆଖିରେ ଲୁହ ଆସିଯାଉଛି । ତମର ଆତ୍ମା ଶାନ୍ତିରେ ରହୁ ଏହାହିଁ ମୋର ବିନମ୍ର ପ୍ରାର୍ଥନା ଭଗବାନଙ୍କ ପାଖରେ ।

# ଦୀପ ଲିଭିଗଲା



ମାମିନା (ବୋହୂ)

ମନୁଷ୍ୟ ଜନ୍ମହେଲେ ମୃତ୍ୟୁ ହୁଏ ସତ୍ୟ, କିନ୍ତୁ ମୃତ୍ୟୁ କେତେବେଳେ ଆସେ ତାହା ଆମେ ଜାଣିପାରୁନି । ମାୟା ସଂସାରରେ ଜଡ଼ିତ ହୋଇ କେତେବେଳେ ଭୁଲ୍ ଓ କେତେବେଳେ ଠିକ୍ ତାହା ଜାଣିପାରୁନା । କିନ୍ତୁ ଯୋଗଜନ୍ମା ପୁରୁଷ ବା ମହାନ୍ ପୁରୁଷ ନିଜ ଜୀବନ କାଳରେ କର୍ତ୍ତବ୍ୟର ଅବହେଳା କରନ୍ତି ନାହିଁ । ମୁଁ ନନାଙ୍କର ୨୭ ବର୍ଷ ସମ୍ପର୍କ ମଧ୍ୟରେ ତାଙ୍କର ମହାନତା, ସ୍ନେହ, ଆଦର୍ଶ, କର୍ତ୍ତବ୍ୟ ଓ କର୍ମଠତା ବିଷୟରେ ବର୍ଣ୍ଣନା କରିପାରିବି ନାହିଁ । ସେ ଥିଲେ ଆମ ପାଇଁ କର୍ତ୍ତବ୍ୟ ଓ ଆଦର୍ଶର ମାଇଲି ଖୁଣ୍ଟି ସଦୃଶ । ସେ ଜଣେ ମହାନ୍ ପୁରୁଷ, ମୁଁ ବା ନନାଙ୍କ ଉଦ୍ଦେଶ୍ୟରେ କଣ ଲେଖିବି ?

ପରିବାର ଭିତରେ ସେ ଥିଲେ ପ୍ରଥମେ ସୁଯୋଗ୍ୟ ପୁତ୍ର, ଯୋଗ୍ୟ ସ୍ୱାମୀ, ଆଦର୍ଶ ପିତା, ସ୍ନେହଶୀଳ ଶ୍ୱଶୁର ଓ ନାତି ନାତୁଣୀଙ୍କ ପାଇଁ ସବୁକିଛି । ତାଙ୍କ ପାଇଁ କିଛି ଆମେ କରିପାରିଲୁ ନାହିଁ । ଆମର ଆଶା ଆଶାରେ ହିଁ ରହିଗଲା । ଭଲ କରିବା ପାଇଁ ଭଲ ଡାକ୍ତର, ଭଲ ଡାକ୍ତରଖାନାକୁ ନେବା ସମ୍ଭବ ହେଲା ନାହିଁ । ଏହା ବୋଧେ ନିୟତିର ବିଧି ଥିଲା । ହେଲେ ମନଟା ବୁଝୁନି, ଏତେ ବଡ଼ ସଂସାର ସାଗର ଭିତରେ ଏକୁଟିଆ କରି ଛାଡି ଗଲେ ଏତେ ଦାୟିତ୍ୱ ଦେଇ । ପରିବାରର ସମସ୍ତଙ୍କ ପାଇଁ ଅଳପ ବହୁତ କିଛି କରିଛନ୍ତି, ହେଲେ ମୋ ପାଇଁ କଣ କଲେ ? ଆମକୁ ଏକାକୀ କରି ଛାଡ଼ିଗଲେ । ନାତୁଣୀ ବାହାଘର ଦେଖିବା ପାଇଁ ଏତେ ମନ କଲେ ଯେ, ଦେଖିପାରିଲେ ନାହିଁ କିୟା ଠିକ୍ କଲେ ନାହିଁ । ନନାଙ୍କର ବହୁତ ହିତ ଉପଦେଶ ମନେ ପଡ଼େ । ମୁଁ ରାଗିଗଲେ ମତେ କହନ୍ତି "ମାମିନା ରାଗନା, ଧୀର ପାଣି ପଥର କାଟେ, ସମୟ ଆସିଲେ ସବୁକିଛି ଠିକ୍ ହୋଇଯିବ । ସମୟକୁ ଅପେକ୍ଷାକର, ବିବାହର ୨୭ ବର୍ଷ ଅତିକ୍ରମ କଲେ । ବି ମୁଁ ବୋହୂ ପରି ଚଳିନି, ଝିଅ ପରି ସ୍ନେହ ଦିଅନ୍ତିସେ । ସମସ୍ତ ଦୁଃଖସୁଖରେ ମତେ ସାମିଲ୍ କରନ୍ତି । ନନାଙ୍କଠୁ ମୋର ବହୁତ କଥା ଶିଖିବାର ଥିଲା ତାହା ଅପୁରଣୀୟ ହୋଇ ରହିଗଲା । ନନାଙ୍କ ସ୍ଥାନ କେହି ପୂରଣ କରିପାରିବେ ନାହିଁ । ମୁଁ ଠାକୁର ସଦୃଶ ତାଙ୍କ ଉପରେ ବର୍ତ୍ତମାନ ଅଭିମାନ କରୁଛି । କାରଣ, ପୁଅ, ଝିଅ, ବୋଉ ଓ ନାତି ଓ ନାତୁଣୀଙ୍କ ଦାୟିତ୍ୱ ଦେଇ ଦେଲେ ମୋତେ । ହେଲେ ମୋ ଦାୟିତ୍ୱ କିଏ ନେବ ? ମୋର ଦୁଃଖସୁଖ କିଏ ବୁଝିବ ? ସାଥିରେ ଥିଲେ ସେ ସମସ୍ତ କଥା ବୁଝନ୍ତି ଓ ବୁଝିବାକୁ ଚେଷ୍ଟା କରନ୍ତି । ଜନ୍ମଦିନ ପାଇଁ ମୁଁ ପଚାରିଲି କ'ଣ କରିବା ? ନନା ମନା କଲେ ଓ କହିଲେ ଘରକୁ ଗଲେ ପାଳିବା । ନନା, ତୁମ ଜନ୍ମଦିନରେ ଆମକୁ କଣ ଦବ ବୋଲି ମାଗିଲି । ନନା କହିଲେ, ଯାହା ମାଗିବୁ ତାହା ଦେବି । ଆଶୀର୍ବାଦ ଛଡା ଆଉ କିଛି ମାଗିଲି ନାହିଁ । ନନା କହିଲେ, ଠକିଦେଇ ଚାଲିଗଲେ ମୋ ଘରର ଦୀପ ଲିଭେଇ ଦେଇ । ୯୦ ବର୍ଷରେ ସେ ପଦାର୍ପଣ କରିଥିଲେ ମଧ କୌଣସି କ୍ଷେତ୍ରରେ ହାର ମାନି ନଥିଲେ । ସେ ଥିଲେ ଏକାଧାରରେ ନିଷ୍ଠାବାନ୍ ବାସ୍ତବବାଦୀ ପୁରୁଷ । ଏତେ ମହାନ୍ ହୋଇଥିଲେ ମଧ ତାଙ୍କର କୌଣସି ଥିରେ ଗର୍ବ ନଥିଲା । ଏହା ବୋଧହୁଏ ତାଙ୍କର ମହାନ୍ ବ୍ୟକ୍ତିତ୍ୱର ପରିଚୟ । ତାଙ୍କର ହସହସ ମୁହଁ ସବୁବେଳେ ଭଲ ଲାଗେ ଓ ଆନନ୍ଦ ଲାଗେ । ରାଗିଲେ ଭୟ ଲାଗେ ଓ ମୁହଁ ଶୁଖିଗଲେ ମୋର କଳିଜା ଫାଟି

ଗଲା ପରି ଲାଗେ । ଭାରି ଦୁଃଖ ଲାଗେ । ମୁଁ କେବେ ତାଙ୍କ ମନରେ ଦୁଃଖ ଦେବାକୁ ଋହେଁ ନାହିଁ । କବିବର ରାଧାନାଥ ଚିଲିକାକୁ ବର୍ଣ୍ଣନା କରି ଲେଖିଥିଲେ, ସୁନ୍ଦରେ ଦୃଷ୍ଟିର ଅବସାଦ ନାହିଁ, ଯେତେ ଦେଖୁଥିଲେ ନୂଆ ଦିଶୁଥାଇ । ଠିକ୍ ସେହିପରି ନନାଙ୍କର ଋଲିରେ, କଥାରେ ଓ ହସରେ କେତେ ଯେ ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ ଓ ଲାଳିତ୍ୟ ଥିଲା, ତାହା ବର୍ଣ୍ଣନା କରିହେବ ନାହିଁ । ନନାଙ୍କ ପାଖରେ ଅଳି କରୁଛ, ଏହି ପରି ମହାନ୍ ପୁରୁଷ ଆପଣଙ୍କୁ ପରଜନ୍ମରେ ଶ୍ୱଶୁର, ପିତା ଭାଇ ବା ପୁତ୍ର ରୂପରେ ପାଏ । ଲେଖୁ ଲେଖୁ ବହୁତ ଲେଖିଲିଣି, ଏହା ମୋର ଜୀବନର ପ୍ରଥମ ଲେଖା । କିପରି ଏତେ ଗୁଡ଼ିଏ ଲେଖିଲି ତାହା ମୁଁ ଜାଣିପାରୁନି । ବୋଧହୁଏ ତାଙ୍କର ଆଶୀର୍ବାଦ । ଠାକୁରଙ୍କ ପାଖରେ ପ୍ରାର୍ଥନା କରୁଛି ନନାଙ୍କର ଆତ୍ମାର ସଦ୍‌ଗତି ହେଉ । ଆମ ନନା ଅମର ।



## ଭୁଲିବିନି ସେହି ଦିନକୁ



ସୋନୀ (ନାତୁଣୀ)

ମୁଁ ସେହି ଦୁଃଖର ଦିନକୁ ଜୀବନରେ କେବେବି ଭୁଲି ପାରିବିନି । ଏତେ ଦୁଃଖର ଓ ଅଶୁଭ ଦିନଟି ଆମକୁ ଓ ଆମ ଘରକୁ ଚିରଦିନ ପାଇଁ ଅନ୍ଧାର କରିଦେଲା । ହସଖୁସିର ସଂସାରଟି ଚୂରମାର୍ ହୋଇଗଲା । ବାପା ବୋଲି ମୁଁ କାହାକୁ ଡାକିବି ? ୨୩.୦୫.୨୦୧୨ ଦିନଟି ମୋ ପାଇଁ ତୁମର ଶେଷଦର୍ଶନର ଦିନ ଥିଲା । ସେହିଦିନ ମତେ ଗେଲ କଲେ । ଗୋଡ଼ ମୋଡ଼ିଲି ସେତିକି ମୋର ଶେଷ ସ୍ପର୍ଶ । ପ୍ରଥମ ଶ୍ରେଣୀରୁ ବି.ଏ.ସି ପର୍ଯ୍ୟନ୍ତ ମତେ ପାଠପଢାରେ ସାହାଯ୍ୟ କଲ । ପ୍ରତିଟି ମୂହୁର୍ତ୍ତ ମୋ ପାଠ ବିଷୟରେ ମତେ ପଋର । ତୁମର ନାତୁଣୀ ବୋଲି ମୁଁ ବହୁତ ଗର୍ବ କରେ । ବାପା ପଢାପଢ଼ି କରିବାକୁ ଭଲପାନ୍ତି । ପିଲାଦିନେ ବିଭିନ୍ନ ପ୍ରକାର ବହି ପଢ଼ିବାକୁ କୁହନ୍ତି । ନ ପଢ଼ିଲେ ବିରକ୍ତ ହୁଅନ୍ତି । ବହି ପଢ଼ିଲେ ଜ୍ଞାନର ବିକାଶ ହେବ ବୋଲି କୁହନ୍ତି । ବାପା ଏତେ ମହାନ୍ ବ୍ୟକ୍ତି ଥିଲେ, ତାହା ମୁଁ ପରେ ଜାଣିଲି ତାଙ୍କର କୌଣସି ଥିରେ ଗର୍ବ ନଥିଲା ସେ ଥିଲେ ଫଳନ୍ତି ଗଛ ସଦୃଶ । ବାପା ମତେ ସବୁବେଳେ କୁହନ୍ତି ଅପ୍ରିୟ ସତ୍ୟ କଥା କହିବୁନି କି କାହାର ଶତ୍ରୁ ହେବୁନି । ବାପାଙ୍କର ଏହି ପଦଟି ମୁଁ ସବୁବେଳେ ମନେ ରଖିବି ଓ କାର୍ଯ୍ୟରେ ଲଗାଇବି ବୋଲି ଚେଷ୍ଟା କରିବି । ସେ ଥିଲେ ବାସ୍ତବବାଦୀ ପୁରୁଷ, ଚିରନମସ୍ୟ । ବାପା ତୁମେ ଯେଉଁଠି ଥାଅ ନା କାହିଁକ, ମତେ ତୁମର ଆଶୀର୍ବାଦ ସବୁବେଳେ ମିଳୁ ତୁମ ଆତ୍ମାର ସଦ୍‌ଗତି ହେଉ ଏହାହିଁ ମୋର ପ୍ରାର୍ଥନା ।

# ମୋ ଜୀବନର ଚଲାପଥ

-ବୁଲୁ(କ୍ୱାଇଁ)



ମୋର ତାଙ୍କ ସହିତ ପ୍ରଥମେ ୧୯୭୯ ମସିହାରେ ସାକ୍ଷାତ, ହୁଏ ଯେତେବେଳେ ମୁଁ ତାଙ୍କର ବଡ଼େଇବାଙ୍କ ଦୋକାନଘର ଭଡ଼ା ନେବା ପାଇଁ ତାଙ୍କ ଘରକୁ କଥା ହେବା ପାଇଁ ଯାଇଥିଲି । ତାଙ୍କର ମୋ ସହିତ ପରିବାର ସମ୍ପର୍କ ୧୯୮୩ ମସିହା ଜୁଲାଇ ୩ ତାରିଖରେ । ସେ କ୍ୱାଇଁ ଭାବରେ ମୋତେ ଗ୍ରହଣ କରିଥିଲେ । ତା ପରଠାରୁ ଦୀର୍ଘ ୩୦ ବର୍ଷର ସମ୍ପର୍କ ଘନିଷ୍ଠ ଥିଲା । ସମସ୍ତ ଦୁଃଖସୁଖରେ ସେ ମୋର ସାଥି ଥିଲେ । ଟିକେ କଣ ଅସୁବିଧା ସୁବିଧା ହେଲେ ମୁଁ ଦୌଡ଼ିଯାଏ ଧର୍ମଶାଳାକୁ ତାଙ୍କ ସହିତ ମୋର ଦୁଃଖସୁଖ ବାଣ୍ଟିବା ପାଇଁ । ସେ ଏବଂ ବୋଉ ମୋତେ ଓ ତାଙ୍କ ଝିଅକୁ ସବୁବେଳେ ତାଙ୍କ ଛାୟା ତଳେ ଘୋଡ଼ାଇ ରଖୁଥିଲେ ଓ ଆଶ୍ୱାସନା ଭରସା ଦେଉଥିଲେ ।

ତାଙ୍କ ଜୀବନରେ ସବୁଠାରୁ ଭଲ ଗୁଣ ଥିଲା ଯେ ସେ କାହା ପ୍ରତି ହିଂସା ଓ ବାଦ କରୁନଥିଲେ । ଅନ୍ୟକୁ ସବୁବେଳେ ସବୁ ପ୍ରକାର ଉପାୟରେ ସାହାଯ୍ୟ ଓ ପରାମର୍ଶ ଦେଉଥିଲେ । ପରିବାରର ସମସ୍ତ ଲୋକଙ୍କୁ କିପରି ଗୋଟିଏ ସୂତାରେ ବାନ୍ଧିହେବ ତାହା ସଦାସର୍ବଦା ଚେଷ୍ଟା କରୁଥିଲେ । ଜୀବନର ଶେଷ ମୂହୁର୍ତ୍ତ ପର୍ଯ୍ୟନ୍ତ ତାଙ୍କର ଜୀବନ କର୍ମଠ ଓ କର୍ମମୟ ଥିଲା ।

ଯେତେବେଳେ ଦେଖାହୁଏ କୁହନ୍ତି, "ତମେ କେବେ ତମର ଝିଅ ଲିଟାଲି ର ବାହାଘର କରିବ ? ଯେତେବେଳେ ପଚାରୁଛି, ସେତେବେଳେ କହୁଛ, ଖାଲି ପାଠ ପଢୁଛି, M. Phil କରୁଛି, Goldmedal ପାଇଛ. Ph.D. କରୁଛି, ଇତ୍ୟାଦି ଇତ୍ୟାଦି । ମୁଁ ଆଉ କେତେଦିନ ବଞ୍ଚିବି ? ଶୀଘ୍ର ବାହାଘର କଲେ ମୁଁ ଦେଖିବି '' କିନ୍ତୁ ଭାଗ୍ୟର ବିଡ଼ମ୍ବନା, ସେ ବାହାଘର ଦେଖିବାକୁ ରହିଲେ ନାହିଁ ।

ସବୁ ସମୟରେ ପଚାରି ବୁଝୁଥିଲେ ବ୍ୟବସାୟ କିପରି ଚାଲିଛି । ସବୁବେଳେ ମନ ଭିତରୁ ଆଶୀର୍ବାଦ ଦେଉଥିଲେ ମୋର କିପରି ଅଧିକ ଉନ୍ନତି ହେଉ ଓ ତାଙ୍କରି ଆଶୀର୍ବାଦରେ ମୋର ଅସମ୍ଭବ ଅଗ୍ରଗତି ଦେଖି ତାଙ୍କ ମନ ବହୁତ ଖୁସି ହୋଇଥିଲା ।

ହଠାତ୍ ସେ ଆମକୁ ଛାଡି ଚାଲିଯିବେ ଏହା ଆମର ବିଶ୍ୱାସର ବାହାରେ ଥିଲା । ମୃତ୍ୟୁର ପୂର୍ବଦିନ ଅପରାହ୍ନ ୫ ଟା ବେଳକୁ ମୋର ତାଙ୍କ ସହିତ ICU ରେ ଶେଷ ସାକ୍ଷାତ୍ ହୋଇଥିଲା ଓ ସେ ମୋ ହାତଧରି କିଛି ପ୍ରଶ୍ନ ପଚାରିଥିଲେ: 'ମୋର ଦେହ କଣ ଭଲ ହେବନି ? ମୁଁ କଣ ଚାଲି ପାରିବି ? କେତେଦିନ ମୋତେ ଏହା ଭିତରେ ରଖିବ ?' ମୁଁ କେବଳ ତାଙ୍କୁ ଉତ୍ତର ଦେଇଥିଲି,ଆପଣ ଅତି ଶିଘ୍ର ଭଲ ହୋଇ ଓ ଚାଲି ଘରକୁ ଫେରିବେ" । ଏହା ଶୁଣି ସେ ସଙ୍ଗେ ସଙ୍ଗେ ମତେ କହିଲେ, "ମୋର ନିଦ ହେଉନି, ଝାଡା ହେଉନି ।" ବାସ୍ ସେତିକି, ତାଙ୍କ ସହିତ ଶେଷ ସାକ୍ଷାତ ଓ ଶେଷ କଥାବାର୍ତ୍ତା ।

ଏତିକି ମୋର ଭଗବାନଙ୍କ ପାଖରେ ବିନମ୍ର ନିବେଦନ ଆପଣଙ୍କ ଆତ୍ମାକୁ ଭବବାନ ତାଙ୍କ ସହିତ କୋଳେଇ ମିଶାଇ ନିଅନ୍ତୁ । ସେହିପରି ଆପଣଙ୍କର ସ୍ନେହମୟ ଦୃଷ୍ଟି ଆମ ଉପରେ ରହିଥାଉ ।

# Last Tribute From a Grandson

**Jaga (Chintu)**



Aja is a feeling beyond expression, a feeling only those two can understand which is beyond the boundaries of the words only expressible through those two pair of eyes. From the day of my birth till the day when I will be counting my last breath you are and you will be my soul guardian. Under your shadow and when you move your palm on my head to give blessings I feel that I am the most blessed person in this world safe from every threat and trouble. Your blessings and support have always made me strong enough to overcome every obstacles coming in the journey of life and fight against them with all courage and without any fear. Though physically you are no more with us you will always be there in our heart and guide us in each and every moment. Smile in your face is worth millions to me and I will always be praying to God that he would never keep you away from your charming smile. We will be missing a lot Aja. Love you.

# Inspiration & Guide

**Arjun Panda (Guddu)**



Dear Aja, You were the inspiration and guide of our family. Your effort and your deed will be forever memorable in everyone's heart. You were a very kind and helpful person I had ever seen. My best finding about you is that You always smile & make others smile. I still remember some of your words, "Be good, do good." Nothing more to say. It is just not enough for such a great personality among human beings like you. You will be for ever alive in every one's heart. That is all about you from me.



# FOR MY AJA



**Littley (Granddaughter)**

Tears streamed down my face when I saw you that way,
I love you Aja, I will love you everyday.
As my tears raced down my face,
I knew you'd soon be in a happier place.
Thinking back now I really must say ,
I feel so lucky and privileged to have known AJA to this day .
For in my life, you have played a special part,
The memories I will treasure and keep close to your heart.

Starting from day on which I get my life to till date. it was you my AJA . For me I am glad to be born and called to be your Natuni (Grand daughter) .

Your affectionate way of calling my name "Littley" is so sweet everyway . It is difficult to write all those colourful memories, which I have spent with you,in a piece of paper. But I remember those ladoos made out of Rassi, coconut & Amul which my Aja makes for me. I use to take to hostel and my mouth doesn't stop telling to my friends that these ladoos are made by my AJA. I will miss those ladoos AJA . You gave me admission to school. I had that glimpse of you while getting admission in school.I got the question paper for entrance exam of class –I. But I was not able to answer it. You helped me out to do that and was sitting beside me. Whenever I come to home in holidays, my Aja brings chenapoda for me. If it doesn't come for me from Aja, then I use to ask my mother that perhaps Aja dosen't know that I have come home. Though I love chenapoda, but it is brought by AJA, it's a very special thing for me. Though I use to stay in hostel I couldn't spend much time with you eor which now I feel guilty and regret myself. I also feel guilty that I couldn't fulfil some of your dreams. Although he has gone, we will always be together and his spirit will live with each one of us forever. When you look to the sky. look for the brightest star as that will be Aja looking down on us from heaven.

And now I would like to thank the Good lord above,
For blessing us with our AJA with his kindness and love.
Dear God, if it is not too much Fuss,
Take extra special care of our AJA as he is very very dear to us.
AJA , if you are listening, say a prayer for us every day.
Be sure to protect us and guide us on our way.

We know when God called you, you had to go.But we want you to know, AJA we miss you and love you, so much. My love will follow you wherever you go, ohh, how you loved us so much? Although I feel sorrow and hate that I can't fight with fate , I never wanted you to die.You did a lot for us throughout the year . It's time to wipe away the tears . I want you to know I will never let you go .

I know you loved me too,
My heart will always be with you.
Now it's time to say good bye,
Until I see you again someday when I die.

# ଅନ୍ତରରେ ଝଡ଼



-ପ୍ରସନ୍ନ କୁମାର ଦୀକ୍ଷିତ
(ପୁତୁରା)

ବାସ୍ତବବାଦୀ ମଣିଷ ମୁଁ । ତଥାପି ମଉସାଙ୍କର ଏମିତି ହଠାତ୍ ବିଦାୟକୁ ବିଶ୍ୱାସ କରିପାରୁ ନାହିଁ । କୈଶୋରରେ ବୋଉ, ଯୌବନରେ ନନାଙ୍କୁ ହରାଇଥିଲି । କିନ୍ତୁ ସେ ଶୂନ୍ୟସ୍ଥାନ ପୂରଣ ହୋଇପାରିଥିଲା ମୋ ମଉସା ଓ ମାଉସୀଙ୍କ ଯୋଗୁଁ । ସବୁକିଛି ମୁଁ ପାଇଛି ତାଙ୍କ ଠାରୁ । ଶାନ୍ତ, ସରଳ ଓ ନମ୍ର ସ୍ୱଭାବ ଯୋଗୁଁ ଘରଠୁ ବାହାର ପର୍ଯ୍ୟନ୍ତ ଏବଂ ସାଙ୍ଗସାଥୀ ସବୁଠାରେ ସେ ଥିଲେ ପ୍ରିୟ । ଯେତେ ଖରାପ ପରିସ୍ଥିତି ଆସିଲେ ମଧ୍ୟ ସେ କେବେ ଭାଙ୍ଗି ପଡ଼ି ନଥିଲେ । ସବୁବେଳେ ସ୍ଥିତପ୍ରଜ୍ଞ ଓ ଧୈର୍ଯ୍ୟଶୀଳ । ୧୯୮୨ ମସିହାଠାରୁ ଆଜିପର୍ଯ୍ୟନ୍ତ ସବୁବେଳେ ସେ ନିଜକୁ ସମାଜସେବା, କିର୍ତ୍ତିରାଜିର ରକ୍ଷଣାବେକ୍ଷଣ ଓ କେଦାରନାଥ ଗବେଷଣା ପ୍ରତିଷ୍ଠାନର କିପରି ଅଧିକ ଉନ୍ନତି ହେବ ସେ ବିଷୟରେ ଚିନ୍ତା କରୁଥିଲେ । ଗବେଷଣାର ପ୍ରାୟ ପ୍ରତ୍ୟେକ ସଭାରେ ମୁଁ ତାଙ୍କ ସାଙ୍ଗରେ ଥାଏ । ପ୍ରଥମେ ଗବେଷଣାର ସଭା ବଡ଼େଇବାଙ୍କ ଟାଉନ୍ କ୍ଲବ୍‌ରେ ହେଉଥିଲା । ପଣ୍ଡିତ ନୀଳମଣି ମିଶ୍ର, ଡଃ ରବି ନାରାୟଣ ଦାଶ, ଡଃ ମହେଶ ପ୍ରସାଦ ଦାଶ, ଡଃ ଭଗବାନ ପଣ୍ଡା, ବଡ଼ ଭାଇନା (ପ୍ରସନ୍ନ କୁମାର ମହାପାତ୍ର), ଡଃ କରୁଣା ସାଗର ବେହେରା ଏବଂ ଡଃ ଲକ୍ଷ୍ମଣ କୁମାର ପଣ୍ଡା ଇତ୍ୟାଦି ସମସ୍ତେ ମିଶି କିପରି ଗବେଷଣାର ନୂଆଘର ତିଆରି ହେବ ସେ ନେଇ ଚିନ୍ତା କରୁଥିଲେ । ବିଶେଷ ଭାବରେ ପଣ୍ଡିତ ନୀଳମଣି ମିଶ୍ର ଓ ମଉସା କେତେ ଯେ ପରିଶ୍ରମ କରିଛନ୍ତି ତାହା ମୁଁ ନିଜ ଆଖିରେ ଦେଖିଛି । ଗବେଷଣା ପାଠାଗାରର କିପରି ଉନ୍ନତି ହେବ, କେଉଁଠୁ କିପରି ଆର୍ଥିକ ଅନୁଦାନ ଆସିବ, ସେ ବିଷୟରେ ଅହରହ ଚିନ୍ତା କରୁଥିଲେ । ତା ଛଡା ସେ ଭୁବନେଶ୍ୱର ଅଞ୍ଚଳର କଳା, ସଂସ୍କୃତି ଓ ଐତିହ୍ୟ ବିଷୟରେ ଏକ ଚଳନ୍ତି ଜ୍ଞାନକୋଷ ଥିଲେ । ଓଡ଼ିଶାର ଐତିହ୍ୟ ସମ୍ବନ୍ଧରେ ତାଙ୍କର ରୁଚି ଓ ଅନୁରାଗ ଦେଖି ମୁଁ ନିଜେ ମଧ୍ୟ ଅଭିଭୂତ ହୋଇଯାଇଥିଲି । ବିଭିନ୍ନ ଅଞ୍ଚଳର ବିଭିନ୍ନ ମନ୍ଦିର, ଭଗ୍ନମୂର୍ତ୍ତି,ପ୍ରାଚୀନ କିର୍ତ୍ତୀରାଜିକୁ ସେ ପରିଦର୍ଶନ କରି ଅନୁଧ୍ୟାନ କରୁଥିଲେ ।

ତାଙ୍କରି ପ୍ରେରଣାରେ ମୁଁ ଇତିହାସର ଛାତ୍ର ହେଲି, ତାପରେ ଲଳିତଗିରିର ଉତ୍ଖନନରେ ମଧ୍ୟ ଯୋଗଦେଇଥିଲି । ପୁରାତତ୍ତ୍ୱରେ ଡିପ୍ଲୋମା କରିବା ପାଇଁ ମଧ୍ୟ ମୋତେ ସେ ଦିଲ୍ଲୀ ଯିବାକୁ ଉତ୍ସାହିତ କରିଥିଲେ । କାହିଁକି ପି.ଏଚ୍.ଡି. କରୁ ନାହୁଁ ବୋଲି ମଧ୍ୟ ମୋତେ ବାରମ୍ବାର କହୁଥିଲେ । ଯେତେବେଳେ ମୋତେ ଦେଖିବେ, ଏ.ଏସ୍.ଆଇ. କେଉଁଠି କଣ କାମ କରୁଛି ପଚାରି ବୁଝନ୍ତି । କାରଣ ସେ ନିଜେ ଭୁବନେଶ୍ୱରର ବହୁତ କୀର୍ତ୍ତିରାଜିର ପୁନରୁଦ୍ଧାର କରିଛନ୍ତି । ବିଭିନ୍ନ ପଦ ପଦବୀରେ ଥାଇ ମଧ୍ୟ ସେ ନିଜକୁ ସବୁବେଳେ କର୍ମୀ ବୋଲି ପରିଚୟ ଦିଅନ୍ତି; ଏହାହିଁ ତାଙ୍କ କର୍ମନିଷ୍ଠାର ପରିଚୟ । ସେ ଏକାଧାରରେ ଜଣେ ବନ୍ଧୁବତ୍ସଳ, ସାହାଯ୍ୟକାରୀ, ପରୋପକାରୀ, ସ୍ନେହୀ, ପ୍ରତ୍ନତତ୍ତ୍ୱବିତ, ସାହିତ୍ୟିକ ଓ ସ୍ୱାଭିମାନୀ ବ୍ୟକ୍ତିଥିଲେ । ଏପରି ବ୍ୟକ୍ତି ଏ ଦୁନିଆରେ ବିରଳ । ସେ କେବଳ ବୈଦ୍ୟ ପରିବାରର ମୁରବି ନଥିଲେ, ସେ ଥିଲେ ପୁରୁଣା ଭୁବନେଶ୍ୱରର ଭୀଷ୍ମ ପିତାମହ ସଦୃଶ ।

ଆଜି ଭାବିବାକୁ ଅବିଶ୍ୱାସ ଲାଗୁଛି, ସତରେ କ'ଣ ତାଙ୍କ ମୃତ୍ୟୁ ସତ୍ୟ, ସତରେ କ'ଣ ତାଙ୍କ ବିନା ଆଗେଇବାଟା ସମ୍ଭବ ? ଗୋଡ଼ ଯେପରି ଅଟକି ଯାଇଛି ତାଙ୍କ ଡ଼ାକରାରେ । ପଛକୁ ଫେରି ଚାହିଁଲେ ଲାଗୁଛି ଯେପରି ସିଏ ଠିଆହୋଇ ଅପଲକ ଦୃଷ୍ଟିରେ ଇଙ୍ଗିତରେ କିଛି ନିର୍ଦ୍ଦେଶ ଓ ଉପଦେଶ ବ୍ୟକ୍ତ କରୁଛନ୍ତି । ଇଏତ ଜନ୍ମାଜନ୍ମାନ୍ତରର ନିଷ୍ଠୁର ସତ୍ୟ । ଏଇଟାକୁ କେହି କ'ଣ କେବେ ଅଟକାଇ ଦେଇପାରେ ? ପଛକୁ ଫେରି ଚାହିଁବାର ଏ ସମୟ ନୁହେଁ । ଏହା ଆଗକୁ

ଆଗେଇଯିବାର ଆରମ୍ଭ ମାତ୍ର । କେଜାଣି କାହିଁକି ତାଙ୍କ ଉପସ୍ଥିତି କେତେ ଯେ ଅନ୍ତରଙ୍ଗ ଥିଲା ଯେ ତାହା ଆଜିର ଏହି ନୀରବତାକୁ ଉଦ୍‌ବେଳିତ କରୁଛି ।

ତାଙ୍କର ଆଦର୍ଶ ଓ ଅନୁଭୂତି ଆମ ସମସ୍ତଙ୍କୁ ପ୍ରେରଣା ଦେଉଥାଉ ତଥା ତାଙ୍କ ଆଶୀର୍ବାଦ ଆମ୍ଭମାନଙ୍କ ପ୍ରତି ଥାଉ, ଏହାହିଁ କାମନା । ଏହି ଅବସରରେ ତାଙ୍କ ଅମର ଆତ୍ମାର ସଦ୍‌ଗତି ନିମନ୍ତେ ପ୍ରଭୁ ଶ୍ରୀ ଲିଙ୍ଗରାଜଙ୍କ ନିକଟରେ ପ୍ରାର୍ଥନା କରୁଛି । କେଦାରନାଥ ଗବେଷଣା ପ୍ରତିଷ୍ଠାନର ଉତ୍ତରୋତ୍ତର ଉନ୍ନତିରେ ଓଡ଼ିଶାର ଇତିହାସ ଓ ସଂସ୍କୃତି ସମୃଦ୍ଧ ହେଉ । ଏହି ଯଥାର୍ଥ କାର୍ଯ୍ୟ ସଂପାଦନ ହୋଇପାରିଲେ ତାହାହିଁ ହେବ ତାଙ୍କ ଅମର ଆତ୍ମା ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ।

□□□

# ସ୍ମୃତିରୁ ପଦେ



- ମାଲୁ (ପୁତୁରା ବୋହୂ)

ମଉସା ଆଉ ନାହାନ୍ତି, ଏକଥା ମୁଁ ସହଜରେ ଗ୍ରହଣ କରିପାରୁ ନାହିଁ । ଏ ମାୟା ସଂସାରରେ ସ୍ନେହ ଓ ଭଲପାଇବା ମୁଖ୍ୟ ଅଟେ, ଯାହାକି ମୋ ମଉସାଙ୍କ ପାଖରେ ଭରି ରହିଥିଲା । ୧୪ ବର୍ଷ ତଳେ ମଉସା ମୋତେ ବୋହୂକରି ଆଣିଥିଲେ ଓ ଦେଇଥିଲେ ସେଇ ସ୍ନେହ । ଭଲପାଇବା ଓ ଆଶୀର୍ବାଦ, ସପ୍ତାହେ ନଦେଖିଲେ ପଚାରିବେ "କ'ଣ ହେଲା, କାହିଁକି ଆସିନଥିଲୁ ।" ମନେ ପଡ଼େ ଗଲାବର୍ଷର କଥା । ମୋ'ଦେହ ଖରାପ କଥା ଶୁଣି ମାଉସୀଙ୍କୁ ସାଙ୍ଗରେ ନେଇ ଧାଇଁ ଆସିଥିଲେ ଦେଖିବା ପାଇଁ । ମୁଁ ଘରେ ନଥିଲି, ପରେ ସୁସ୍ଥ ହେଲାପରେ ଗଲି ଦେଖାକରିବାକୁ । କହିଲି, "ମଉସା ଆପଣ କାହିଁକି ପାହାଚ ଉଠି ଯାଇଥିଲେ ମୁଁ ଭଲହେଲା ପରେ ଆସିନଥାନ୍ତି ?" ସଙ୍ଗେ ସଙ୍ଗେ ଉତ୍ତର ମିଳିଲା "ହଁ,ମୁଁ କ'ଣ ଜମା ପାହାଚ ଉଠୁନି ? ଆପୋଲୋରେ ସେଦିନ କହିଲେ, "ମାଲୁ, ସ୍କୁଲ୍ ଛୁଟି ହୋଇଗଲା ? ମୁଁ କିହିଲି, "ହଁ ମଉସା" । କହିଲେ, "ହଉ, ମୁଁ ତ କାମ ଲଗେଇ ଦେଇଛି ।" କିନ୍ତୁ ଦୁଃଖ ରହିଗଲା, ସେବା ଟିକେ କରିବାର ସୁଯୋଗ ଆମକୁ ନ ଦେଇ ସ୍ନେହରଜ୍ଜୁରେ ବାନ୍ଧି ରଖିଥିବା ସମସ୍ତଙ୍କୁ ଶୋକ ସାଗରରେ ଭସାଇ ଆପଣ କେମିତି ଚାଲିଗଲେ ? କାହାର ବା ଅଧିକାର ଅଛି ବିଧିର ଖେଳରେ ?

ପ୍ରଭୁ ପାଦରେ ଏତିକି କାମନା ଆପଣଙ୍କ ଆତ୍ମା ଚିରଶାନ୍ତି ଲଭୁ, ଆପଣଙ୍କ ସ୍ନେହ ଆମକୁ ଆଗକୁ ବାଟ ଚାଲିବା ପାଇଁ ଶକ୍ତି ଓ ପ୍ରେରଣା ଦେଉ ।

# ସ୍ମୃତିରେ କକେଇ

-ନିର୍ମଳ କୁମାର ମହାପାତ୍ର

ଅର୍କକ୍ଷେତ୍ର କୋଣାର୍କରେ ସରକାରୀ କାର୍ଯ୍ୟବ୍ୟସ୍ତତା ମଧ୍ୟରେ ହଠାତ୍ ଟେଲିଫୋନ୍‌ରେ ପୁତୁରା ଛାତ୍ରୁ ଠାରୁ ଖବର ପାଇଲି ଗୁଣ କକେଇ ଚାଲିଗଲେ । ଖବରଟା ଶୁଣିବା ପରେ ମୋ ମୁଣ୍ଡ ଉପରେ ଆକାଶ ଛିଣ୍ଡି ପଡ଼ିଲା ପରି ଲାଗିଲା । ସଂଗେସଂଗେ ସମସ୍ତ କାମରୁ ପଛରେ ପକାଇ ଘର ଅଭିମୁଖେ ବାହରି ପଡ଼ିଲି । ଦେଢ଼ଘଣ୍ଟା ମଧ୍ୟରେ ଭୁବନେଶ୍ୱରରେ ପହଞ୍ଚି ପ୍ରଥମେ କକେଇଙ୍କର ଶେଷ ଦର୍ଶନ ପାଇଁ ତାଙ୍କ ଘରେ ପହଞ୍ଚିଲି । ସେଠାରେ କକେଇଙ୍କ ଶରୀର ଦେଖି ଭାବିଲି ଯେ ସେ ଯେପରି କ୍ଲାନ୍ତ ହୋଇ ଶୋଇ ଯାଇଛନ୍ତି । ମନକୁ ବିଶ୍ୱାସ କରିପାରିଲି ନାହିଁ । ତାଙ୍କ ଚାରିପଟେ ପରିବାରର ସମସ୍ତ ସଦସ୍ୟ ଶୋକାକୁଳ ନୟନରେ ଆଖିରୁ ଲୋତକ ଗଡ଼ାଇ ଚାଲିଥାନ୍ତି । ନିଜର କୋହଭରା ଲୁହକୁ ଚାପି ରଖି ଅନେକ ଅତୀତ କଥା ଭାବି ଚାଲିଲି ।

ଗୁଣ କକେଇ ଜଣେ ବ୍ୟକ୍ତି ନଥିଲେ ସେ ଥିଲେ ଏକ ପରିବାର । ୧୯୮୧ ମସିହାରେ ନନା (ସ୍ୱର୍ଗତଃ କେଦାର ନାଥମହାପାତ୍ର)ଙ୍କ ମୃତ୍ୟୁ ପରେ କକେଇ ଏକମାତ୍ର ବ୍ୟକ୍ତି ଯେ କି ଆମ ବିଶାଳ ପରିବାରକୁ ଦିଗ୍‌ଦର୍ଶନ ଦେଇ ଆସୁଥିଲେ । ଛାତ୍ର ଅବସ୍ଥାରୁ ନନାଙ୍କର ମୃତ୍ୟୁ ପରେ ପ୍ରତ୍ୟେକ କାର୍ଯ୍ୟରେ ଆମେ କକେଇଙ୍କ ଉପରେ ନିଜର ଅଭିଭାବକର ଦାବି କରି ଆସୁଥିଲୁ ।

ନନା ତାଙ୍କ ଜୀବନରେ ସାନଭାଇକୁ ଏତେ ଭଲ ପାଉଥିଲେ, ଯାହାକି ପ୍ରତ୍ୟେକ କାମ ସ୍ଥିର କରିବା ପୂର୍ବରୁ କକେଇଙ୍କ ପରାମର୍ଶ ସାଦରେ ଗ୍ରହଣ କରୁଥିଲେ । ପରିବାରର ସମସ୍ତ ଭଲମନ୍ଦ, ସୁଖଦୁଃଖରେ କକେଇ ସମସ୍ତଙ୍କୁ ସାହାଯ୍ୟ କରୁଥିଲେ । ନନାଙ୍କ ପରେ ଦୀର୍ଘ ବତିଶ ବର୍ଷପରେ କକେଇଙ୍କ ଅନୁପସ୍ଥିତି ଆମକୁ ଅଭିଭାବକହୀନ କରିଦେଇଛି ।

ଆପୋଲୋ ହସ୍‌ପିଟାଲରେ ଚିକିତ୍ସା ଚାଲିଥିବାବେଳେ ମୁଁ ଦୁଇ ଥର ତାଙ୍କୁ ଦେଖା କରିବାପାଇଁ ଯାଇଥିଲି । ପ୍ରଥମ ଥର ସେ ଖୁବ୍ ପ୍ରଫୁଲ୍ଲ ଥିଲେ ମୋତେ ପାଖରେ ବସାଇ ଅନେକ ଆଲୋଚନା କରିଥିଲେ । କହିଲେ, "ପୁଅ କରୁଣା ସାଗର ବେହେରାଙ୍କର ଶ୍ରାଦ୍ଧ ବାର୍ଷିକୀ ୨୦ ତାରିଖରେ ପଡୁଛି । ଯାହା ଭାଗୀ ଘରିକା କରିବେ" । ସେ ମଧ ମୋତେ କହଲେ ମୋତେ ୧୮ତାରିଖରେ ୯୧ବର୍ଷ ହେଉଅଛି । ମୁଁ ସେହିଠାରେ ଭଗବାନଙ୍କୁ ପ୍ରାର୍ଥନା କଲି ଯେ ୯୧ବର୍ଷ ଜନ୍ମଦିନ ପୂର୍ବରୁ ସେ ଯେପରି ସମ୍ପୂର୍ଣ୍ଣ ସୁସ୍ଥ ହୋଇ ଘରକୁ ଆସନ୍ତୁ । କିନ୍ତୁ ଭଗବାନଙ୍କର ବିଚିତ୍ର ଲୀଳା । ଘରକୁ ଫେରିବା ପୂର୍ବରୁ ସେ ତାଙ୍କୁ ନିଜ କୋଳକୁ ନେଇଗଲେ ।

କେଦାରନାଥ ଗବେଷଣା ପ୍ରତିଷ୍ଠାନ କକେଇଙ୍କର ମାନସପୁତ୍ର ଅଟେ । ନିଜର ଅକ୍ଲାନ୍ତ ପରିଶ୍ରମ ଏବଂ ଇଚ୍ଛାଶକ୍ତି ବଳରେ ସେ ମାତ୍ର ୨ବର୍ଷ ମଧରେ ପ୍ରତିଷ୍ଠାନକୁ ନିର୍ମାଣ କରି ଉଦ୍‌ଘାଟନ କରି ପାରିଥିଲେ, ଯାହାକି ବୃଦ୍ଧ ବୟସରେ କୌଣସି ଲୋକ ପକ୍ଷରେ କରିବା ସମ୍ଭବ ନୁହେଁ । ମୃତ୍ୟୁ ପର୍ଯ୍ୟନ୍ତ ଏପରି କୌଣସି ଦିନ ନାହିଁ ସେ ଗବେଷଣା ପ୍ରତିଷ୍ଠାନର ଉନ୍ନତିପାଇଁ ଚିନ୍ତା କରିନାହାନ୍ତି । ତାଙ୍କର ମୃତ୍ୟୁରେ ଅନୁଷ୍ଠାନ ଯେପରି ଲୁହ ଝରାଉଛି ।

ପରିବାରର ସମସ୍ତ ସଦସ୍ୟଙ୍କୁ ସେ ଏପରି ସ୍ନେହ କରୁଥିଲେ, ଯାହାକି ବର୍ଣ୍ଣନା କରିବା ସମ୍ଭବ ନୁହେଁ । ତଥାପି ଏକ ଅନୁଭୂତିରୁ ସମ୍ୟକ୍ ଧାରଣ ଦେଉଛି । ଥରେ ଦଶହରା ମହାଷ୍ଟମୀ ଦିନ (୨୦୧୦ ମସିହା) ମୁଁ ମୋ ଝିଅର ଚାକିରୀ ପାଇଁ ତାକୁ ପୁନେ (ମହାରାଷ୍ଟ୍ର) ନେଇ ପରିବାର ସହିତ ଯାଇଥିଲି । ପୁନେ ସହରରୁ ଫେରିବା ପରେ ସେ ଯମଦ୍ୱିତୀୟା ଦିନ ମହାବୀର ମନ୍ଦିରରେ ମୋତେ ଅଭିମାନ କରି କହିଲେ, "ପୁଅ ତୁ ଦଶହରା ଭୋଜି ନ ଖାଇ କୁଆଡ଼େ ପଳାଇଲୁ ? ସେହିଠାରେ ମୁଁ ତାଙ୍କ ଅନ୍ତରର ସ୍ନେହକୁ ଅନୁଭବ କରିଥିଲି" ।

ପରିବାରର ଯେ ବ୍ୟକ୍ତି କୌଣସି ଅସୁସ୍ଥ ଥିବାର ଖବର ପାଇଲେ ସେ ସଂଗେ ସଂଗେ ଦେଖା କରିବାକୁ ଆସିଥାନ୍ତି ଏବଂ ସୁସ୍ଥ ହେବା ପର୍ଯ୍ୟନ୍ତ ଖବର ପଚାରି ବୁଝନ୍ତି ।

ନାଗେଶ୍ୱର ମନ୍ଦିର ଏବଂ ଅନ୍ୟାନ୍ୟ ମନ୍ଦିରମାନଙ୍କ ରକ୍ଷଣାବେକ୍ଷଣ ସମ୍ବନ୍ଧରେ ସେ ସବୁବେଳେ ପରାମର୍ଶ ଦେଇଥାନ୍ତି । ମନ୍ଦିର ସମନ୍ୱୟ ସମିତି ବୈଠକରେ ମୁଁ ଯୋଗଦେବା ସମୟରେ ସେ ମୋତେ ଅନେକ ସାହାଯ୍ୟ କରିଥାନ୍ତି । ଆସନ୍ତା ଶିବରାତ୍ରୀ ଏବଂ ଅଶୋକାଷ୍ଟମୀ ବୈଠକରେ ତାଙ୍କର ଅନୁପସ୍ଥିତି ଜଣାପଡ଼ିବ ।

ପୁରୁଣା ଭୁବନେଶ୍ୱରର ସେ ଜଣେ ବ୍ୟକ୍ତି ନଥିଲେ, ସେ ଥିଲେ ସମସ୍ତଙ୍କର ଅଭିଭାବକ । ଯେ କୌଣସି ବ୍ୟକ୍ତିର ଯେ କୌଣସି ସମୟରେ ଅସୁବିଧା ପଡ଼ିଲେ କକେଇ ବିନା ସଂକୋଚରେ ସାହାଯ୍ୟ କରି ଆସୁଥିଲେ, ଯାହାକି ତାଙ୍କ ମୃତ୍ୟୁ ପରେ ସମସ୍ତେ ଅନୁଭବ କରିପାରିବେ ।

ବୈଦ୍ୟ ପରିବାର ଇତିହାସ ସମ୍ବନ୍ଧରେ ସେ ଏକ କ୍ଷୁଦ୍ର ପୁସ୍ତିକା ଛପାଇ ସମସ୍ତଙ୍କୁ ଦେଇଥିଲେ । ଉକ୍ତ ପୁସ୍ତକଟି ଆମପାଇଁ ଏକ ଉପାଦେୟ ପୁସ୍ତିକା ଅଟେ । ଆମ ପିତୃପିତାମହଙ୍କର ସମସ୍ତ ସୁକାର୍ଯ୍ୟାବଳୀ ସେଥିଲେ ଉଲ୍ଲେଖ କରାଯାଇଛ, ଯାହାକି ଆମେ ଶତ ଚେଷ୍ଟା କରିଥିଲେ ମଧ୍ୟ ଜାଣି ପାରିନଥାନ୍ତୁ ।

ନନା, ବୋଉଙ୍କ ପରେ କକେଇ, ଏକମାତ୍ର ସଦସ୍ୟ ଥିଲେ ଯାହାଙ୍କୁ କି ଆମେ ପ୍ରତ୍ୟେକ କାର୍ଯ୍ୟରେ ଉପଦେଶ ମାଗୁଥିଲୁ । ତାଙ୍କ ପରେ ଏ ବିଶାଳ ପରିବାରକୁ ଦିଗ୍‌ଦର୍ଶନ ଦେବାପାଇଁ କେହି ନାହାନ୍ତି । ତାହାହିଁ ଆମେ ପାଇଁ ଏକ ମୁଖ୍ୟ ସମସ୍ୟା ଅଟେ ।

ପ୍ରଭୁ ଲିଙ୍ଗରାଜଙ୍କ ବିଭିନ୍ନ ପର୍ବପର୍ବାଣୀ, ବିଭିନ୍ନ ଅନୁଷ୍ଠାନର ଉତ୍ସବାଦି ଏବଂ ଭୁବନେଶ୍ୱରର ପ୍ରତ୍ୟେକ ଗ୍ରାମର ବିଭିନ୍ନ ଅନୁଷ୍ଠାନରେ ସେ ସବୁବେଳେ ଉପସ୍ଥିତ ରହି ସମସ୍ତଙ୍କୁ ଦିଗ୍‌ଦର୍ଶନ ଦେଇଥାନ୍ତି । ତାଙ୍କ ଅନୁପସ୍ଥିତି ସମସ୍ତଙ୍କ ପାଇଁ ଅପୂରଣୀୟ କ୍ଷତି ଅଟେ ।

ତାଙ୍କ ଜୀବନରେ ସେ ଅନେକ ପୁରୁଣା କୀର୍ତ୍ତୀରାଜିର ପୁନଉଦ୍ଧାର କରିଛନ୍ତି । ବିନ୍ଦୁସାଗର ପୁନରୁଦ୍ଧାର କାର୍ଯ୍ୟରେ ତାଙ୍କର ଅନେକ ଅବଦାନ ରହିଛି । ପୌରପାଳିକାରେ ଅଧକ୍ଷ ଥିବା ସମୟରେ ବିନ୍ଦୁସାଗର ପୁନରୁଦ୍ଧାର ପାଇଁ ସେ ଯୋଜନା ପ୍ରସ୍ତୁତ କରି କାମ କରିଥିଲେ । ତାଳେଶ୍ୱର ମନ୍ଦିର, ଦ୍ୱାରବାସିନୀ ମନ୍ଦିର, କେଦାରଗୌରୀ ମନ୍ଦିର ସଂରକ୍ଷଣ କାର୍ଯ୍ୟ ତାଙ୍କର ସାହାଯ୍ୟରେ ସମ୍ଭବ ହୋଇଥିଲା ।

ତାଙ୍କ ଅନୁପସ୍ଥିତିରେ ଆମେ ଆମ ପରିବାରର ଉନ୍ନତି କରିବା ଅନେକତଃ ଅସମ୍ଭବ ଅଟେ । ତଥାପି ଭଗବାନଙ୍କୁ ମୋର ବିନୀତ ପ୍ରାର୍ଥନା ଯେପରି ତାଙ୍କର ଆତ୍ମା ସଦ୍‌ଗତି ଲାଭ କରୁ ।

ପୁରୁଣା ଶାରଦା ପ୍ରେସ କୋଠା
ମନ୍ଦିର ରାସ୍ତା, ଭୁବନେଶ୍ୱର - ୨

# ସମୁଧି

ସମୁଧି ଗୁଣବାବୁ ମେ ମାସ ଆଦ୍ରା ନକ୍ଷତ୍ରେ ଗୁରୁବାର ୨୪.୦୫.୨୦୧୨ ସକାଳ ୧୧.୧୫ ମିନିଟ୍ ସମୟରେ ଦେହତ୍ୟାଗ କଲେ । ଏ ଖବର ଶୁଣିବା ମାତ୍ରେ ବସିବା ଯାଗାରୁ ମୁଁ ଉଠିଗଲି । ସ୍ଥିର ହୋଇ ରହିପାରିଲିନି । ସମସ୍ତେ ମିଶି ତାଙ୍କ ବାସଭବନକୁ ଦଉଡ଼ି ଗଲୁ ମୋର ବଡ଼ ସମୁଦି ଥିଲେ ସ୍ନେହପୂର୍ଣ୍ଣ । ଏପରି ସ୍ନେହପୂର୍ଣ୍ଣ ଲୋକ ମୋ ଜୀବନ କାଳରେ ମୁଁ ଦେଖିନାହିଁ । ସ୍ନେହ, ପ୍ରେମ,ତ୍ୟାଗ ଏସବୁ ଗୁଣରେ ଅଧିକାରୀ ଥିଲେ ଗୁଣବାବୁ । ନିଜକୁ ନୁହେଁ, ଅନ୍ୟକୁ ଭଲପାଇବା ଶିଖିଥିଲେ ସେ । ଯେତେବେଳେ ତାଙ୍କ ଘରକୁ ଯାଏ, କହୁଥିଲେ, "ସମୁଧି ଆସିଗଲ" । କର୍ମ ହିଁ ଜୀବନ ଥିଲା ତାଙ୍କ ପାଇଁ । ସେଥିପାଇଁ ତ' ହସପିଟାଲର ବନ୍ଦ ଦରଜା ଭିତରେ ବେଶୀ ଦିନ ରହି ପାରିଲେନି ସମୁଧି । ପରିବାରକୁ ଶୋକାକୁଳ ପରିବେଶରେ ଛାଡ଼ିଦେଇ ଚାଲିଗଲେ ଆରପାରିକୁ । ପଛରେ ଛାଡ଼ିଦେଇ ଚାଲିଗଲେ ତାଙ୍କ ସ୍ନେହ, ଶ୍ରଦ୍ଧା ଆଉ ଭଲପାଇବା । ମୋର ଭାଗ୍ୟ ଏ ଜନ୍ମରେ ମୁଁ ତାଙ୍କୁ ସମୁଧି ରୂପରେ ପାଇଥିଲି । ମୁଁ ଭଗବାନଙ୍କ ପାଖରେ ନିବେଦନ କରୁଛି ତାଙ୍କ ଆତ୍ମାର ସଦଗତି ହେଉ ।

ସାଇରାମ

ସମୁଧି ସମୁଦୁଣୀ

□□□

# ମଉସା

ମିତାଲି

ବର୍ଷେ ନୁହେଁ ଦୁଇ ବର୍ଷ ନୁହେଁ, ଦୀର୍ଘ ସତେଇଶି ବର୍ଷର ସମ୍ପର୍କ ମଉସା ଆଉ ମୋ ଭିତରେ । ନାନୀର ବାହାଘର ପରଠୁ ଆମ ପରିବାର ଭିତରେ ଗଢ଼ିଉଠିଛି ଏକ ଭିନ୍ନ ସମ୍ପର୍କ । ନାନୀର ଭଉଣୀ ହିସାବରେ ନୁହେଁ ବଂର ମୁଁ ସେ ଘରର ଝିଅ ଥିଲି ବୋଲି କହିଲେ ଭୁଲ ହେବନାହିଁ । ମଉସାଙ୍କ ପାଖରୁ ସ୍ନେହ ଶ୍ରଦ୍ଧା ସବୁକିଛି ମୁଁ ପାଇଛି । ଖୁବ୍ ପାଖରୁ ମୁଁ ତାଙ୍କୁ ଦେଖିଛି । ଯେତେବେଳେ ଯେଉଁ ଉତ୍ସବ ହୁଏ ମୁଁ ସେଠାରେ ଥାଏ । ଯଦି କୌଣସି କାରଣବଶତଃ ଆସିନଥାଏ, ମଉସା ପଚାରନ୍ତି, "କ'ଣ ଆଜି ମିତାଲି ଆସିନିକି ?କାହିଁକି ଆସିଲାନି ? କ'ଣ ହେଲା ?" ସବୁ ଖବର ବୁଝନ୍ତି । ସେ ଆଉ ନାହାଁନ୍ତି ଏକଥା ଲେଖିଲା ବେଳକୁ ମୋ କଲମ ଶକ୍ତୀହିନ ହୋଇ ପଡୁଛି, ଦେହ ଶିତେଇ ଉଠୁଛି, ଲୋମ ଟାଙ୍କୁରି ଉଠୁଛି । ଯେତେବେଳେ ଏ ଖବର ଶୁଣିଲି ମତେ ଚାରିଆଡ଼େ ଅନ୍ଧାର ଦିଶିଲା । କାରଣ,ମୁଁ ସେତେବେଳେ ମଉସାଙ୍କ ପାଖରେ ଥାଏ । କେମିତି କହିବି ଏତେବଡ଼ କଥା ମୁଁ ବୁଝିପାରୁ ନଥାଏ । ପାଖରେ ନାତି, ନାତୁଣି, ନାନୀ କେହି ବି ନଥାନ୍ତି । ଖବର ଶୁଣିଲା ବେଳକୁ ସମସ୍ତେ ହସ୍‌ପିଟାଲରେ ଥିଲେ ମୁଁ ମଉସଙ୍କ ପାଖେ ପାଖେ ଥାଏ । ଆଖିର ଲୁହକୁ ଆଖିରେ ରଖି ଛାତିକୁ ପଥର କରି ଠିଆ ହୋଇଥାଏ । ମଉସାଙ୍କ ପାଖରେ ମାଉସୀ ବସି କାନ୍ଦୁଥାଆନ୍ତି । ହେଲେ ଜାଣି ନଥାନ୍ତି ମଉସା ଚାଲିଗଲେ ବୋଲି । ମୁଁ ତାଙ୍କୁ ବୁଝାଉଥାଏ ସବୁ ଠିକ୍ ହୋଇଯିବ ବୋଲି । ହେଲେ ମାଉସୀ ଏ ସବୁ ଶୁଣିଲା ପରେ କୋହ ସମ୍ଭାଳି ପାରିଲେନି ମାଉସୀଙ୍କ ସହିତ ମୁଁ ବି ମୋ' ଲୁହକୁ ରୋକି ପାରୁନଥାଏ । ହେଲେ ଯାହା ସତ୍ୟ ତାକୁ ତ' ଆମେ ରୋକି ପାରିବାନି । ସେ କଥା ଆମକୁ ସ୍ୱୀକାର କରିବାକୁ ପଡ଼ିବ । ତାଙ୍କ ସେବା, ତାଙ୍କ କଥା ମୋର ଚିରଦିନ ମନେ ରହିବ । ସେ କଥାକୁ ଓ ମଉସାଙ୍କୁ ମୁଁ କେବେ ବି ଭୁଲି ପାରିବିନି । ସେ ମହାନ୍ ଆତ୍ମା ଶାନ୍ତି ପାଉ, ଏତିକି ମୋର ଠାକୁରଙ୍କ ପାଖରେ ପ୍ରାର୍ଥନା ।

# ସ୍ମୃତି

କୁଳି, ବାପିନା

ମଉସା ଆଉ ନାହାଁନ୍ତି ଏ ଖବର ଶୁଣିଲା ପରେ ପାଦତଳୁ ମାଟି ଖସିଗଲା ପରି ଲାଗିଲା ।କିଛି ସମୟ ଧରି ବିଶ୍ୱାସ କରିପାରିନଥିଲି । ଭାବିଲି ସବୁ ଶୁଣିଥିବା କଥାକୁ ଭୁଲ ପ୍ରମାଣିତ କରି ମଉସା ପୁଣି ଚାଲିଆସିବେ ହସପିଟାଲ୍‌ରୁ ଭଲ ହୋଇ । ହେଲେ ବିଧିର ବିଧାନ ଥିଲା ବିଚିତ୍ର । ମୋ ଭାବନା ଭାବନାରେ ହିଁ ରହିଗଲା ମଉସା ଆଖିବୁଜିଦେଲେ ସବୁଦିନ ପାଇଁ । ଚିରନିଦ୍ରାରେ ଶୋଇଯାଇଥିବା ଲୋକକୁ ଆଉ କଣ କେହି ଉଠାଇପାରେ ? ପରିବାର ଲୋକଙ୍କୁ ଶୋକାକୁଳ ପରିବେଶ ଭିତରେ ଛାଡିଦେଇ ଚାଲିଗଲେ ମଉସା ଆର ପାରିକୁ । ଯେଉଁଠୁ ଆଉ କେବେବି କିଏ ଫେରେନି । ପଛରେ ଛାଡ଼ି ଚାଲିଗଲେ ଅଜସ୍ର ସ୍ମୃତିର ଗନ୍ତାଘର । ସ୍ନେହ ମମତାରେ ଭରି ରହିଥିବା ମଣିଷଟିଏ ଥିଲେ ମଉସା । ସବୁବେଳେ ହସ ହସ ମୁହଁ, ରାଗର ଲେଶ ମାତ୍ର ଚିହ୍ନ ନାହିଁ । ଏମିତି କେତେଜଣ ମଣିଷ ଅଛନ୍ତି, ଯିଏ ନିଜ ପାଇଁ ନୁହେଁ, ଅନ୍ୟ ପାଇଁ ହିଁ ବଞ୍ଚିବା ଶିଖିଛନ୍ତି ? କର୍ମ ହିଁ ଭଗବାନ ଏ କଥାକୁ ସେ ଅକ୍ଷରରେ ପାଳନ କରିଥିଲେ । ଅନ୍ୟକୁ ସାହାଯ୍ୟ କରିବା ହିଁ ତାଙ୍କର ପରମ ଧର୍ମ ଥିଲା । ଭୁବନେଶ୍ୱରର ଉନ୍ନତି ପାଇଁ ଜଣେ ନଗରପାଳ ହିସାବରେ ମଉସା ବହୁତ କିଛି କରିଛନ୍ତି । ଖାଲି ତାଙ୍କ ପରିବାର ଲୋକ କାହିଁକି, ସାରା ଭୁବନେଶ୍ୱର ଝୁରୁଛି ତାଙ୍କୁ । ତ୍ୟାଗର ମୂର୍ତିମନ୍ତ ପ୍ରତିମା ଥିଲେ ମଉସା । ଯିଏ ତାଙ୍କ ସଂସ୍ପର୍ଶରେ ଆସିଛି, ସେ ତାଙ୍କୁ କେବେବି ଭୁଲି ପାରିବନି । ତାଙ୍କ ସ୍ନେହ ମମତାର ଅନ୍ତ ନାହିଁ । ସବୁବେଳେ ତାଙ୍କ ଘରେ ଗହଳ ଚହଳ ଲାଗି ରହୁଥିଲା । ଖାଇବା ପିଇବା ପାଇଁ ସେ କାହାକୁ ମନା କରନ୍ତିନି । କହନ୍ତି ଲୋକ ଘରେ ଖାଇଲେ ଲକ୍ଷ୍ମୀ ଆସିବେ । ଥିଲେ ଲକ୍ଷ୍ମୀବନ୍ତ ପୁରୁଷ । କେବେ କାହା ଉପରେ ରାଗିବା ମୁଁ ଦେଖିନି । ମଉସା ଦେବତୁଲ୍ୟ ଲୋକ ଥିଲେ । ମଉସାଙ୍କୁ ଦେଖିଲେ ମନର ଦୁଃଖ ହାଲକା ହୋଇଯାଏ । ଲାଗେ ତାଙ୍କଠୁ ବହୁତ କିଛି ଶିଖିବାର ଅଛି । ନବେ ବର୍ଷ ହେଲେବି ସେ ଯୁବକ ଥିଲେ, କାରଣ ସେ ବୟସରେ ମଉସା ଯେତିକି କାମ କରୁଥିଲେ, ଆଜିକାଲିର ଯୁବକ ସେତିକି କାମ କରିବେନି । ତାଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ଯୁବସମାଜ ଚାଲିଲେ ସମାଜ ବିପଥଗାମୀ ହବନି । ସେ ମହାନ ଆତ୍ମାର ସଦ୍‌ଗତି କାମନା କରୁଛି । ତାଙ୍କର ଆତ୍ମା ଭଗବାନଙ୍କ ସହିତ ଲୀନ ହୋଇଯାଉ । ସେ ଆମ ପାଇଁ ଚିର ଅମର ହୋଇ ରହିବେ ।



# ଚିର ସ୍ମରଣୀୟ

ପିଣ୍ଟୁ

ସ୍ୱପ୍ନରେ ସୁଦ୍ଧା ଭାବିନଥିଲି ବାହାରେ ଥାଇ ଏତେବଡ ଖବରଟେ ଶୁଣିବି ବୋଲି । ମଉସା ଆଉ ନାହାଁନ୍ତି ବୋଲି ମିତାଲିଠୁ ଶୁଣିବା ପରେ ମୋର ଦେହ ଭିତରେ କଣ ହେଇଗଲା । ଫୋନ୍‌ରେ ଶୁଣିଥିଲି ମଉସା ହସ୍‌ପିଟାଲରେ ଅଛନ୍ତି । ପ୍ରତ୍ୟେକ ଦିନ ଫୋନ୍‌ରେ ମିତାଲିଠୁ ମଉସା କେମିତି ଅଛନ୍ତି ବୋଲି ବୁଝୁଥିଲି । ଦୂରରେ ଥାଇ ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁଥିଲି ମଉସା ଭଲ ହୋଇଯିବେ ବୋଲି । ମୋର ମନେ ଅଛି, ମୁଁ ଛୁଟିରେ କଟକ ଆସିଥାଏ । ମାମିନାନୀଙ୍କ ଘରକୁ ଯାଇଥାଏ ଦେଖା କରିବାକୁ ।ସେଇଠୁ ନାନୀ କହିଲେ , "ପିଣ୍ଟୁ ,ନନା ବୋଉଙ୍କୁ ଟିକେ ଶିରିଡି ନେବାକୁ ମୋର ଇଚ୍ଛା ହେଉଛି ଏରୋପ୍ଲେନରେ ।"ମୁଁ କହିଲି ,"ନାନୀ ଠିକ୍ ଅଛ ସବୁ ଦାୟିତ୍ୱ ମୋ ଉପରେ ଛାଡିଦିଅନ୍ତୁ ।" ଆମେ ସମସ୍ତେ ମଉସା ମାଉସୀଙ୍କୁ ନେଇ ଶିରିଡି ବାହାରିଲୁ ୫ ଦିନ ପାଇଁ ସେପ୍ଟେମ୍ବର ମାସରେ । ମଉସା ମାଉସୀ କେମିତି ଭଲରେ ଦର୍ଶନ କରିବେ । ଭଲରେ ଯାଇ ଭଲରେ ଫେରି ଆସିବେ ,ସେ ସବୁର ବ୍ୟବସ୍ଥା ମୁଁ କରିଥାଏ । ଶିରିଡି, ତ୍ରୟମ୍ବକେଶ୍ୱର, ଶନିଷ୍ଟର ମନ୍ଦିର, ସବୁଯାଗାକୁ ବୁଲାଇ ବୁଲାଇ ମୁଁ ଦେଖାଉଥାଏ । ଶେଷରେ ବମ୍ବେର ସିଦ୍ଧିବିନାୟକ ମନ୍ଦିର, ଲକ୍ଷ୍ମୀ ମନ୍ଦିର ସବୁକୁ ବୁଲାଇ ଆଣି ଆମେ ଏରୋପ୍ଲେନରେ ମଉସାଙ୍କୁ ନେଇ ଘର ଅଭିମୁଖେ ବାହାରିଲୁ । ମଉସା ମାଉସୀ ବହୁତ ଖୁସିଥିଲେ । ଏତେ ବଡ଼ ଗୁରୁ ଦାୟିତ୍ୱ ନାନୀ ମୋ ଉପରେ ଦେଇଥିବାରୁ ମୁଁ ନିଜକୁ ଧନ୍ୟ ମନେ କରୁଛି । ହେଲେ ଦୁଃଖ ବି ଲାଗୁଛି ସେ ଭଳି ମହାପୁରୁଷଙ୍କ ଶେଷ ଦର୍ଶନ ମୁଁ ଟିକେ କରିପାରିଲିନି ବୋଲି । ଦୂରରୁ ଥାଇ ମୁଁ ଏତିକି ପ୍ରାର୍ଥନା କରୁଛି ,ମଉସାଙ୍କ ମହାନ୍ ଆତ୍ମା ଚିର ଅମର ହୋଇ ରହୁ ।

# ଦୁଃଖର ଅମାବାସ୍ୟା

ଫେଡେଇ

(୨୪.୦୫.୨୦୧୨ (ଗୁରୁବାର) ଦିନ ଆମ ସମସ୍ତଙ୍କ ପାଇଁ ଦୁଃଖର ଦିନି । ଆମେ କେବେ ଭାବିନଥିଲୁ ଆପଣ ଆମକୁ ଏତେ ଶିଘ୍ର ଛାଡି ଚାଲିଯିବେ । )

ଆମେ ଆଉ କାହାକୁ ଡାକିବୁ ବାବୁ ? ଆମ ବାପା ବୋଉ ଜନ୍ମ କରିଛନ୍ତିଜଜ କିନ୍ତୁ ଆମର ସବୁ କିଛି ବାବୁ କରିଛନ୍ତି । ମୁଁ କେବେ ଅଜା ଜେଜେବାପା କଣ ଜାଣିନି । ଆମ ବାବୁଙ୍କଠୁ ଯେତିକି ସ୍ନେହ ପାଇଛୁ,ଛୋଟ ଜିନିଷ ଟିକିଏ ହଉ ପଛେ ଦେଇଛନ୍ତି ବାବୁ ।ଆଜି ଯଦି ଆମେ ପାଠ ଅଛ ହଉ ବହୁତ ହଉ ପଢ଼ିଛୁ,ବାବୁଙ୍କ ପାଇଁ । ଆମେ ଯଦି ପରିଚିତ ହୋଇଛୁ କେବଳ ବାବୁଙ୍କ ପାଇଁ । ମୋ ବାପା ୮ ବର୍ଷ ହୋଇଥିଲେ ,ବାବୁ ତାଙ୍କୁ ପାଖରେ ରଖିଛନ୍ତି ତାଙ୍କ ପୁଅ ପରି । ଆମେ ବହୁତ ଗରିବ । ଆମକୁ ସିଏ କେବେ ଦୂରେଇ ଦେଇ ନାହାନ୍ତି । ତାଙ୍କ ପରିବାର ଭଳି ଭଲପାଆନ୍ତି । ମୁଁ ବାବୁଙ୍କୁ ବହୁତ ଭଲ ପାଏ ।ମୋର ଟିକିଏ ଦେହ ଖରାପ ହୋଇଗଲେ ପଚାରନ୍ତି ଫେଡେଇ ତୋର କଣ ହେଉଛି ।ସବୁ ଯାତ୍ରାକୁ ମୋ ବାପା ମୋତେ ଯାତ୍ରା ଖର୍ଚ୍ଚ ଦିଅନ୍ତି,ମୋ ବାପା ଦିଅନ୍ତି ବାପାଙ୍କ ନାଁରେ ।ବହୁତ ଭଲ ଗୁଣ ଆମକୁ ଶିଖେଇଛନ୍ତି ବାବୁ । ବାବୁ ତମେ କାହିଁକି ଆମକୁ ଏକା କରି ଛାଡି ଚାଲିଗଲ । ଆମେ କଣ କରିବୁ । ମତେ କିଏ ଏତେ ଭଲ ପାଇବ । ସନ୍ଧ୍ୟା ହେଲେ ଡ଼ାକନ୍ତି ଫେଡେଇ ଚା ପିଇବି । ମୋ ହାତ ଯାଉନି ଚା କରିବାକୁ । କାହା ପାଇଁ କରିବି ବାବୁ ? ମୁଁ ଆପଣଙ୍କଠୁ ବହୁତ କିଛି ଶିଖିଛି । ଆପଣ ମୋ ଗୁରୁ, ଆପଣ ମୋପାଇଁ ସବୁକିଛି । ମୁଁ କିଛି ଲେଖି ପାରୁନି , ଯଦି କିଛି ଅଛ ଲେଖିଛି ଆପଣ ଶିଖେଇଛନ୍ତି ।

ଆମ ଭିତରେ ସବୁଦିନ ପାଇଁ ଅଲିଭା ହୋଇ ରହିଗଲେ ବାବୁ ।



# ପ୍ରିୟ ବାପା

ନାତି ମୁନୁ (ଅରବିନ୍ଦ)



ବାପା ବୋଲି ମୁଁ କାହାକୁ ଡାକିବି ମୋର ଆସିବା ଦିନକୁ ଅପେକ୍ଷା କରିବ ? ମୁଁ ବାପାଙ୍କୁ ଯେତେବେଳେ ଯାହା ମାଗେ ଦିଅନ୍ତି । ସ୍କୁଲରେ ଦୁଷ୍ଟ ହବୁତ ଭଲ ପାଠପଢ଼ । ଭଲ ମଣିଷ ହେବୁ ସବୁବେଳେ ବୁଝାନ୍ତି । ସବୁବେଳେ କୁହନ୍ତି ପ୍ରଥମେ ଭଲ ମଣିଷ ହୁଅ । ବ୍ୟବହାର ଭଲକର କାହିଁକି ନା ସମସ୍ତଙ୍କଠୁ ଆଶିର୍ବାଦ ମିଳିବା ବାପା ମୋ ମାଟ୍ରିକ୍ ରେଜଲ୍ଟ ଜାଣିଲେ ନାହିଁ । ଏଇଟା ମୋର ଅବଶୋଷ ରହିଗଲା । ମୋ ପାଠପଢ଼ା ବିଷୟରେ ମତେ ସବୁବେଳେ ବୁଝାନ୍ତି ବିଶାଖାପାଟନାକୁ ଯାଇ ମୋ ସ୍କୁଲ ବୁଲି କରି ଆସଛନ୍ତି । ବର୍ତ୍ତମାନ ଆମ ଘରେ ବାପାଙ୍କ ଜାଗାଟି ଖାଲି ପଡ଼ିଗଲା । ବାପା ଆମ ସମସ୍ତଙ୍କ କଥା ବୁଝନ୍ତି । ଯେତେବେଳେ ମୁଁ ହଷ୍ଟେଲ୍‌ରୁ ଆସେ ସେ ମତେ କୁଣ୍ଢାଇ ଗେଲ କରନ୍ତି ଏହି ସମୟଟି ମୋ ପାଇଁ ସବୁଠାରୁ ଦୂର୍ବଳ ମୂହୁର୍ତ୍ତ । ବାପା ଯୋଉଁଠି ଥାନ୍ତୁ ନା କାହିଁକି ତାଙ୍କର ଆଶିର୍ବାଦ ସବୁବେଳେ ମୋ ଉପରେ ଥିବ ।

I Love my Grand Father very much.

# ବାପା



ଆଦିତ୍ୟ (ନାତି )

୨୪.୦୫.୨୦୧୨ ଠାରୁ ଜୀବନର ସବୁଠାରୁ ପ୍ରିୟ ଡାକ "ବାପା" ଲିଭିଗଲା । ବାପା ଥିଲେ ମୋ ଜୀବନର ସବୁଠାରୁ ଅନ୍ତରଙ୍ଗ ବ୍ୟକ୍ତି । ବାପା ମୋ' ଜୀବନର ଶ୍ରେଷ୍ଠ ପଥପ୍ରଦର୍ଶକ ଥିଲେ ତାଙ୍କଠାରୁ ମୁଁ ଏତେ ସ୍ନେହ ପାଇଛି ବୋଧହୁଏ କୌଣସି ନାତିକୁ ଏତେ ସ୍ନେହ ମିଳି ନଥିବ । ତାଙ୍କର ପ୍ରତିଟି କଥା ମୋ ହୃଦୟକୁ ସବୁବେଳେ ଆନ୍ଦୋଳିତ କରୁଛି । ମତେ ସବୁବେଳେ ନୀତିବାଣୀ ଦିଅନ୍ତି । କୁହନ୍ତି, ଜୀବନରେ ଅନେକ ଝଡ଼ଝଞ୍ଜା ଆସିବ । ତେଣୁ ଅଧୈର୍ଯ୍ୟ ହେଲ କଣ ହେବ ? ଘରର ବଡ଼ ପୁଅ ତୁ ତୋ ଉପରେ ବହୁତ ଦାୟିତ୍ୱ ଅଛି । ତତେ ତୋ ନନା ସହିତ ହାତ ମିଳାଇ ଚାଲିବାକୁ ପଡ଼ିବ । ସବୁଠାରୁ ଦୁଃଖର କଥା ସେ ଗଲାବେଳେ ମୁଁ ପାଖରେ ନଥିଲି ବା ଦେଖିପାରିଲି ନାହିଁ ଶେଷ ମୁହୂର୍ତ୍ତଟିକୁ । ଏହା ବୋଧହୁଏ ମୋ ଭାଗ୍ୟରେ ନ ଥିଲା ଏହା ମୋର ଦୁର୍ଭାଗ୍ୟ । ବାପା ତୁମେ ମୋ ନାମ ଦେଇଥିଲ ଆଦିତ୍ୟ, କିନ୍ତୁ ତୁମେ ମୋ ଜୀବନ ପଥରେ ଆଦିତ୍ୟ ହୋଇ ଆଲୋକ ଦେଉଥିବା । ସେହି ଆଲୋକରେ ମୁଁ ଆଲୋକିତ ହୋଇଛି ଓ ହେଉଥିବି । ମୁଁ ଜାଣିଛି ତୁମର ଆଶୀର୍ବାଦ ମୋ' ଉପରେ ସବୁବେଳେ ଥିଲା, ଅଛି ଓ ରହିବ । କ'ଣ କରିବି ? ପ୍ରତିଟି ମୁହୂର୍ତ୍ତ ତୁମକୁ ଭୁଲି ପାରୁନି । ଏତେ ସ୍ନେହ ଦେଇ କିପରି କିପରି ଏତେ ଶୀଘ୍ର ଚାଲିଗଲ । ମତେ ଆଶୀର୍ବାଦ ଦିଅ ମୁଁ ଯେତେବେଳେ ଆଖି ବନ୍ଦ କଲେ ତୁମକୁ ଦେଖିବାକୁ ପାଇବି

❑❑❑



# ସ୍ମୃତି ଉଦ୍ଦେଶ୍ୟରେ ପଦେ

- ବାପି -

ସେଦିନ ଥିଲା ୨୦୦୯ ମସିହା ଅଗଷ୍ଟମାସ ୬ତାରିଖ । ମୋ ଜୀବନରେ କର୍ମକ୍ଷେତ୍ର ଆରମ୍ଭ ହୁଏ ଏହି ଆଦିତ୍ୟ ଟ୍ରେଡ଼ିଙ୍ଗ୍‌ରେ । ଏହାର ମାଟି, ପାଣି, ପବନ ସହିତ ପରିଚିତ ହୁଏ । "ବାବୁ"ଙ୍କର ସ୍ନେହ ସଦିଚ୍ଛା ଆଦର୍ଶ ମୋତେ ଆଗକୁ ଆଗକୁ ନେଇଯାଏ । ଭାଇନାଙ୍କର କର୍ତ୍ତବ୍ୟ ପରାୟଣତା, ସାଧନା, ଉଦ୍‌ଯୋଗକୁ ପାଥେୟ କରି ମୁଁ ମୋ କର୍ତ୍ତବ୍ୟ ସଂପାଦନରେ ଆଗେଇଯାଏ । ଏହାରି ଭିତରେ ଦୀର୍ଘ ଚାରିବର୍ଷ ଅତିବାହିତ ହୋଇଯାଏ ।

"ବାବୁ"ଙ୍କର ସ୍ନେହବୋଳା ହସହସ ମୁହଁରେ "ବାପି" ଡ଼ାକ ମୋତେ ତାଙ୍କ ନିକଟରୁ ନିକଟତର କରାଏ । "ବାବୁ"ଙ୍କୁ ଗାଡ଼ିରେ ନେଇ ଦୂରସ୍ଥାନକୁ ଯାତ୍ରାକଲାବେଳେ ତାଙ୍କ ମନରେ ଥିବା କାର୍ଯ୍ୟ କରିବାର ଉତ୍କଣ୍ଠା ମୋତେ ଆଶ୍ଚର୍ଯ୍ୟ ଲାଗେ । ବାର୍ଦ୍ଧକ୍ୟରେ ଉପନୀତ ହୋଇ ମଧ୍ୟ ତାଙ୍କର ଆଗ୍ରହ ମୋତେ ଆଗକୁ ଯିବା ପାଇଁ ପ୍ରେରଣା ଯୋଗାଏ । ପ୍ରତିବର୍ଷ ପଞ୍ଚୁକ ପୂର୍ଣ୍ଣିମାରେ ପାଞ୍ଚଦିନଯାକ ପୁରୀରେ ମୁଁ ତାଙ୍କ ସହିତ ରହିଥାଏ, ତାଙ୍କର ସେହି ଆଧ୍ୟାତ୍ମିକ ଭାବନା ମୋତେ ମଧ୍ୟ ଭଗବତ୍ ପ୍ରେମୀ କରାଏ । ତାଙ୍କୁ ବଲାଙ୍ଗୀର, ବୁଗୁଡ଼ା, ଗଞ୍ଜାମ, ନୟାଗଡ଼, ବାଲେଶ୍ୱର ଇତ୍ୟାଦି ସ୍ଥାନକୁ ଗାଡ଼ିରେ ନେଇଯିବା, ଶୀତଳଷଷ୍ଠୀ ପାଇଁ ଚାନ୍ଦା ଆଦାୟ କରିବାର ଅନୁଭୂତି ସବୁ ଆଜି ମନେପଡୁଅଛି । ଜଣେ କର୍ତ୍ତବ୍ୟନିଷ୍ଠ ସାଧକ, ରାଜନୀତିଜ୍ଞ (ଭୁବନେଶ୍ୱରର ପ୍ରଥମ ନଗରପାଳ) ଆଧ୍ୟାତ୍ମିକବାଦୀ, ତ୍ୟାଗୀ, ଦୟାବାନ, ସଚ୍ଚୋଟ, ନିଷ୍ପାପର, ସମୟାନୁବର୍ତ୍ତୀ, ଶୃଙ୍ଖଳିତ ବ୍ୟକ୍ତି, ସତ୍ୟ ଓ ଅହିଂସାର ପୂଜାରୀ ଭାବରେ କେବଳ ଭୁବନେଶ୍ୱର କାହିଁକି ସାରା ଓଡ଼ିଶାରେ ତାଙ୍କର ଖ୍ୟାତି ବ୍ୟାପିଯାଏ ।

କିନ୍ତୁ ଭଗବାନଙ୍କର ଲୀଳା ବଡ଼ ବିଚିତ୍ର, ସେ ଭଲ ଲୋକଙ୍କୁ ନିଜପାଖକୁ ଡେଇଯାଆନ୍ତି । ଗତ ଏପ୍ରିଲ ମାସର ୨୮ତାରିଖ । "ବାବୁ"ଙ୍କର ଦେହ ଅସୁସ୍ଥ ହେଲା । ହଠାତ୍ କାଳବୈଶାଖୀ ହେଲାପରି ଏକ ଅଦିନିଆ ଝଡ଼ ଯେପରି ମାଡ଼ି ଆସିଲା । ଆପୋଲୋ ହସ୍ପିଟାଲ୍‌ରେ ଦୀର୍ଘ ଏକ ମାସ ଧରି ଚିକିତ୍ସିତ ହେଲେ 'ବାବୁ' । ହସ୍‌ପିଟାଲ୍‌ରେ ତାଙ୍କ ପଦସେବା କରିବାର ସୁଯୋଗ ପାଇଥାଏ । ଭଗବାନଙ୍କୁ ପ୍ରାର୍ଥନା କରୁଥାଏ "ହେ ପ୍ରଭୁ ! ବାବୁଙ୍କୁ ଭଲ କରିଦିଅନ୍ତୁ ତାଙ୍କ ଆଶୀର୍ବାଦର ହାତ ସଦା ଆମ ଉପରେ ରହୁ ।" କିନ୍ତୁ ସମସ୍ତ ପ୍ରଚେଷ୍ଟା ସତ୍ତ୍ୱେ ମେ ମାସର ୨୪ ତାରିଖ ଗୁରୁବାର ର ଦୁଃଖଦ ମୁହୂର୍ତ୍ତରେ ସେହି ପୂଣ୍ୟାତ୍ମାଙ୍କର ମହାପ୍ରୟାଣ ଘଟିଲା । ନିସ୍ତବ୍ଧ ହୋଇଗଲେ ପରିବାର, ବ୍ୟବସାୟ ପ୍ରତିଷ୍ଠାନ, ବ୍ରାହ୍ମଣ ମହାସଂଘ, କଂଗ୍ରେସ ଭବନ, ତାଙ୍କ ସହିତ ପରିଚିତ ସମସ୍ତ ପରିବେଶ ।

ତାଙ୍କ ମୃତ୍ୟୁର ଆଠଦିନ ଅତିକ୍ରାନ୍ତ ହୋଇଗଲାଣି । ଶୁଭୁନାହିଁ ସେହି ସ୍ନେହର "ବାପି" ଡ଼ାକ, ସେହି ଗାଡ଼ି ରହିଛି, ଗାଡ଼ିରେ ବସିଯିବାକୁ ନାହାନ୍ତି "ବାବୁ" । ହୃଦୟରୁ ଝରି ଆସୁଛି କୋହ । ଗାଡ଼ିକୁ ଦେଖିଦେଲେ ଅତୀତର ସ୍ମୃତି ସବୁ ଲୁହହୋଇ ଝରି ଆସୁଛି ।

"ବାବୁ" ଆଜି ନାହାଁନ୍ତି ତାଙ୍କ ମରଶରୀର ଆମ ନିକଟରୁ ବିଦାୟ ନେଇଥିଲେ ମଧ୍ୟ ତାଙ୍କର ଅମର ଆତ୍ମାର ବିନାଶ ନାହିଁ । ସେ ଆମ ନିକଟରେ ଥିଲେ, ରହିଛନ୍ତି, ଚିରଦିନ ପାଇଁ ରହିଥିବେ ମଧ୍ୟ । ସେ ଆମ ପାଇଁ ଅମର, ଚିରପୂଜ, ନମସ୍ୟ ।

ହେ ମହାତ୍ମା ! ଆପଣ ସ୍ୱର୍ଗରେ ଥାଇ ଆମ ସମସ୍ତଙ୍କ ଉପରେ ଆପଣଙ୍କର କୃପା ବର୍ଷଣ କରନ୍ତୁ । ଆପଣଙ୍କର ଶୁଭ ଦୃଷ୍ଟି ସମସ୍ତଙ୍କୁ ଆଗକୁ ନେଉ । ଆପଣଙ୍କର ଆଶୀର୍ବାଦର ହାତ ଆମକୁ କର୍ତ୍ତବ୍ୟ ପଥରେ ଆଗେଇ ଯିବା ପାଇଁ ପ୍ରେରଣା ଯୋଗାଉ ।

ହେ ପୂଣ୍ୟାତ୍ମା ! ଆପଣଙ୍କର ଆତ୍ମାର ସଦ୍‌ଗତି ହେଉ, ପରମାତ୍ମାଙ୍କର ସାନ୍ନିଧ୍ୟ ଲାଭ କରନ୍ତୁ । ଜଗତର ନାଥ ଜଗନ୍ନାଥଙ୍କ ନିକଟରେ ମୋର ଏତିକି ପ୍ରାର୍ଥନା । ଆପଣଙ୍କ ପାଦ ତଳେ କୋଟି କୋଟି ପ୍ରଣାମ ।




ପ୍ରଫେସର କରୁଣାସାଗର ବେହେରାଙ୍କ ଶ୍ରାଦ୍ଧ ସଭାରେ




ପ୍ରତିଷ୍ଠାନ ପରିସରରେ ଭଜନ ସଂନ୍ଧ୍ୟା



ରଜତ ଜୟନ୍ତୀ ଅବସରରେ ରାଜ୍ୟପାଳ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେଙ୍କୁ ସ୍ୱାଗତ



# କେଦାରନାଥ ଜନ୍ମ ଶତବାର୍ଷିକୀର ଦୃଶ୍ୟପଟ


















ପ୍ରତିଷ୍ଠାନର ପାଠାଗାରରେ ବିଧାୟକ ଶ୍ରୀ ଅଶୋକ ଚନ୍ଦ୍ର ପଣ୍ଡାଙ୍କ ସହ ଆଲୋଚନା

ପ୍ରତିଷ୍ଠାନରେ ଗୁଣନିଧି...



ପଂକ୍ତି ଭୋଜନ




ଶେଷ ଭାଷଣ (ତା ୨୦.୦୪.୨୦୧୨)

ମୋ'କଥା,
ମୋ'ବ୍ୟଥା





ଗୁଣନିଧି ମହାପାତ୍ର

ପୁରୁଣା ଭୁବନେଶ୍ୱରର
ଶତାବ୍ଦୀବ୍ୟାପୀ
ସାମାଜିକ ଇତିହାସ





# ଆପଣଙ୍କ ଅବର୍ତ୍ତମାନରେ ଆମେ ଅନାଥ



Printed by : Organic Press, BBSR, Mob. :- 9861225661